# ପୃଥିବୀର ଲୋକକଥା

(ମଧ୍ୟପ୍ରଦେଶ)

(ପ୍ରଥମ ଭାଗ)

ଶ୍ରୀ ଲକ୍ଷ୍ମୀଧର ମହାନ୍ତି, ବି. ଏସ୍. ସି. ଏଲ୍. ଏଲ୍. ବି.
ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି, ଏମ୍. ଏ. ବି. ଇ. ଡ଼.

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

# PRUTHIBIR LOKAKATHA

## (Madhya Pradesh)

# ପୃଥିବୀର ଲୋକକଥା

## (ମଧ୍ୟ ପ୍ରଦେଶ)

## (ପ୍ରଥମ ଭାଗ)



ପ୍ରକାଶକ :

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**

ଦଧାଳ ପୁରୀ

ପ୍ରଥମ ସଂସ୍କରଣ

୧୯୮୯, ରାମନବମୀ

ଦ୍ୱିତୀୟ ସଂସ୍କରଣ

୨୦୦୪ ରାମନବମୀ

ପ୍ରଚ୍ଛଦପଟ—**ରବିନାରାୟଣ ନାୟକ**

ମୁଦ୍ରାକାର :

**ନାରାୟଣ ପ୍ରିଣ୍ଟର୍ସ,** କନକାଛକ ରାମଗଡ଼ କଟକ-୮

ମୂଲ୍ୟ : **ବାର ଟଙ୍କା ମାତ୍ର**

# ନିବେଦନ

ଆମର ଶିକ୍ଷା ତ୍ରୁଟିପୂର୍ଣ୍ଣ । ଲୋକଙ୍କ ନୈତିକତାର ମାନ କମିଆସୁଛି । ଆମକୁ ଲୋକ ଚରିତ୍ର ସୁଧାରିବାକୁ ହେବ । ନଚେତ୍ ମଣିଷ ସମାଜ ଧ୍ୱଂସ ପାଇଯିବ ।

ଲୋକକଥା ଅଭିଜ୍ଞ ଲୋକଙ୍କର ଅନୁଭୂତିର କଥା । ସୁନାକୁ ଯେପରି ମାଟି ଖାଇପାରେ ନାହିଁ, ସମୟ ମଧ୍ୟ ଲୋକକଥାକୁ ଧ୍ୱଂସ କରିନାହିଁ । ପୃଥିବୀର ଲୋକକଥା ଯେ ଜାଣିବ, ସେ ବିଜ୍ଞ ହୋଇଯିବ । ସମସ୍ୟାର ସମ୍ମୁଖୀନ ହେବାକୁ ପଛେଇବ ନାହିଁ ।

ପୃଥିବୀର ଲୋକକଥା ଯେ ଓଡ଼ିଆ ଭାଷାରେ ପ୍ରକାଶିତ ହୋଇ ନାହିଁ, ଏକଥା ନୁହେଁ । ଆମେ ସବୁ ଏକାଠି କରି ଧାରାବାହିକ ଭାବେ ପ୍ରକାଶ କରିବାକୁ ଉଦ୍ୟମ କରୁଛୁ । ଏ ପର୍ଯ୍ୟନ୍ତ ସତୁରି ଖଣ୍ଡ ପ୍ରକାଶ ପାଇସାରିଲାଣି ।

ସାଧାରଣ ଲୋକ ଆମର ଗରିବ । ଏଇ ଗୋଟିଏ ଗୋଟିଏ ବହି କିଣି ଯେ ଏକାଠି କରିପାରିବ, ସେ ସମୁଦାୟ ଲୋକକଥା ସେଠି ପାଇଯିବ, ବାଧିବ ନାହିଁ ।

ସବୁ ଲୋକକଥା ଆମପକ୍ଷେ ସଂଗ୍ରହ କରିବା ସମ୍ଭବ ନୁହେଁ । ଯେ କୌଣସି ବଦାନ୍ୟ ବ୍ୟକ୍ତି ଆମକୁ ଏ ଦିଗରେ ସାହାଯ୍ୟ କଲେ ଆମେ ତା'ଠାରେ ଋଣୀ ହେବୁ ।

ଏ ଦିଗରେ ଆପଣଙ୍କର ସଦିଚ୍ଛା, ସହାନୁଭୂତି ଆଉ ସାହାଯ୍ୟ କାମନା କରୁଛୁ ।

**ଶ୍ରୀ ଲକ୍ଷ୍ମୀଧର ମହାନ୍ତି**

# ସୂଚୀପତ୍ର





# ବଡ଼ କିଏ ?

ଜଣେ ରାଜା ଥିଲେ । ତାଙ୍କ ଦେଶରେ ଜଣେ ବଣିକ ଥାଏ । ସେ ଧନରେ କୁବେର । ରାଜାଙ୍କର ତା'ର ଧନ ପ୍ରତି ଘୋର ଲୋଭ । ତାକୁ ଡଣ୍ଡି ରାଜକୋଷକୁ କିଛି ଅର୍ଥ ନେବାକୁ ତାଙ୍କର ଘୋର ଇଚ୍ଛା ।

ରାଜା ତ ଗୁଣ୍ଡା କି ଡକାୟତ ନୁହନ୍ତି ! ସେ ନିୟମ ଅନୁସାରେ କାମ କରିବାକୁ ବାଧ୍ୟ । ନ ହେଲେ, ରାଜ୍ୟରେ ଅସନ୍ତୋଷ ବ୍ୟାପିବ । ବିପ୍ଳବ ହେବା ଅସମ୍ଭବ ନୁହେଁ । ସେଥିପାଇଁ ନିୟମଗର୍ହିତ କାର୍ଯ୍ୟ କରିବାକୁ ସେ ସାହାସ କରୁ ନଥାନ୍ତି । ତଥାପି କୌଣସି ଆଳ ଦେଖାଇ ତାର ଦୋଷ ବାହାର କରିବାକୁ ସେ ତତ୍ପର । ତାହାହେଲେ ଡଣ୍ଡି ନେବାଟା ସହଜ । ମନ କଥା ମନରେ ଥାଏ । ସେ ବଣିକକୁ ଅସୁବିଧାରେ ପକାଇବାକୁ ଓର ଉଣ୍ଡୁଥାନ୍ତି ।

ବଣିକଟିର ଘରେ ସ୍ତ୍ରୀ, ପୁଅ ଆଉ ବୋହୂ । ତାକୁ ମିଶାଇ ଚାରିଜଣ । ଚାକର ବି ସେ ରଖେ ନାହିଁ । ବଣିକଟି ଚତୁର, ନିଷ୍ଠାପର ଓ କର୍ତ୍ତବ୍ୟନିଷ୍ଠ । ତେଣୁ ରାଜା ତାହାର କିଛି ଦୋଷ ଦୁର୍ବଳତା ପାଉ ନ ଥାନ୍ତି ।

କିନ୍ତୁ ଉପାୟ ନ ମିଳିବାରୁ ରାଜା ଖୁବ୍ ବ୍ୟସ୍ତ । କିଛି ନା କିଛି ଦୋଷ ବାହାର କରିବାର ଦାୟିତ୍ୱ ନିଜେ ନେଇଗଲେ । ଦିନେ ରାତିରେ ସେ ବଣିକ ଘରକୁ ବିଜେ କଲେ । ସେତେବେଳକୁ ବଣିକର ଘର ଭିତରପଟୁ ବନ୍ଦ । ରାଜା ବାହାରେ ରହି ବଣିକ

ଘରର କଥାବାର୍ତ୍ତା ଶୁଣିବାକୁ କାନ୍ ଡେରିଲେ । ସେ ଭାବୁଥାନ୍ତି, ଏଇ ମଉକାରେ ଯଦି କେହି ବଣିକ ଘରୁ ବାହାରେ, ତାକୁ ସେ ଧରିନେବେ । ରାତିରେ ବିନାନୁମତିରେ ବୁଲୁଥିବା ଅପରାଧରେ ସେ ଦୋଷୀ ହେବ । ତେଣୁ ତାଙ୍କ ମନସ୍କାମନା ପୂରଣରେ ଅସୁବିଧା ହେବ ନାହିଁ ।

ରାତି ଅଧିକ ହେଲା । ଘରେ ସମସ୍ତେ ଯେଝା କାମ ସାରି ଶୋଇବାକୁ ଗଲେ । କିଛି ସମୟ ଚାଲିଗଲା । ଏତିକବେଳେ ବଣିକର ବୋହୂ ତା ସ୍ୱାମୀକୁ କହିଲା "ରାତି ବେଶି ହେଲାଣି । ତୁମେ ଶୋଉନ କାହିଁକି ?"

"ତୁ ତ ଜାଣୁ, ପାନ ଖଣ୍ଡେ ନ ଖାଇଲେ ମୁଁ ଶୋଇ ପାରିବି ନାହିଁ । ତୁ ତ ଏପର୍ଯ୍ୟନ୍ତ ପାନ ଖଣ୍ଡେ ଦେଲୁ ନାହିଁ । ଶୋଇବା କଥା ପଚାରୁଛୁ କାହିଁକି ?" ସ୍ୱାମୀର କଣ୍ଠରେ ବିରକ୍ତିର ସୁର ।

ବୋହୂ କହିଲା – "ବଟାରେ ତ ଚୂନ ନାହିଁ ! ମୁଁ ଆଉ କ'ଣ କରିବି ?" ପୁଅ କହିଲା—"ବାପାଙ୍କ ବଟାରେ ଚୂନ ଥିବ ! ଯାଇ ନେଇ ଆସୁନୁ ।"

ସ୍ତ୍ରୀଟି ସ୍ୱାମୀ କଥା ମାନି ବିଛଣାରୁ ଉଠିଗଲା । ସେ ଶବ୍ଦ ରାଜା ଶୁଣୁଥାନ୍ତି । କିଛି ସମୟ ପରେ ସେ ଫେରିଆସି କହିଲା – "ବାପାଙ୍କ ପାନବଟାରେ ଚୂନ ନାହିଁ । ଆଜି ରାତିଟା ସେଇମିତି ଶୋଇପଡ଼ ।"

ସ୍ୱାମୀଟି କହିଲା—"ମୁଁ ରାତିଟା ଅନିଦ୍ରା ରହିବାକୁ ପ୍ରସ୍ତୁତ ନୁହେଁ । ମୋତେ ଯେ କୌଣସି ପ୍ରକାରରେ ପାନଖଣ୍ଡେ ଖାଇବାକୁ ହେବ ।" ରାଜା ଏତିକ ଶୁଣି ଭାରି ଖୁସି । ଭାବିଲେ ଯାହାହେଉ ସୁବିଧା ହୋଇଗଲା । ଏଇନେ ବଣିକର ପୁଅ ପାନ ପାଇଁ ପଦାକୁ

ଆସିବ । କିନ୍ତୁ ପରମୁହୂର୍ତ୍ତରେ ସେ ଯାହା ଶୁଣିଲେ, ସେଥିରେ ଆଶ୍ଚର୍ଯ୍ୟ ହୋଇଗଲେ । ବଣିକର ପୁଅ ତା ସ୍ତ୍ରୀକୁ କହିଲା "ତୁ ଗୋଟିଏ କାମ କର । ତୋ ନାକଫୁଲରେ ମୁକ୍ତା ଟିଏ ଲାଗିଛି । ତାକୁ ତୁ ବଟରେ ପୋଡିଦେ । ସେ ସିପ ହୋଇଯିବ । ସେଥିରେ ପାଣି ଟିକିଏ ପକାଇଲେ ସେ ହେବ ଚୂନ । ତାକୁ ଲଗାଇ ପାନ ଖଣ୍ଡେ ଭାଙ୍ଗ । ମୁଁ ତାକୁ ଖାଇକରି ଶୋଇବି ।"

ସ୍ତ୍ରୀ କହିଲା "ତମର ତ ଖୁବ୍ ସଉକ ! ସେ ମୁକ୍ତାର ଦାମ ନ'ଲକ୍ଷ ଟଙ୍କା । ପାନ ଖଣ୍ଡେ ପାଇଁ ନଅଲକ୍ଷ ଟଙ୍କା ପୋଡି ପାଉଁଶ କରିଦେବ ?"

ସ୍ତ୍ରୀଟିଟି ବିରକ୍ତ ହୋଇ ଉଠିଲା । ସେ କହିଲା "ଯାହା ଯେତେବେଳେ ଦରକାର, ତାହା କରିବାକୁ ହେବ । ଟଙ୍କା କଥା ମୁଣ୍ଡରେ ପୁରାଇ ମନ ଭରାକ୍ରାନ୍ତ କରନାହିଁ । ମୁଁ ଯାହା କହୁଛି, ତା କର ।" ସ୍ତ୍ରୀଟି ସ୍ୱାମୀ କଥା ମାନି ମୁକ୍ତାପୋଡି ପାନ ଖଣ୍ଡେ ଦେଲା । ପାନ ଖାଇ ବଣିକର ପୁଅ ତା ସ୍ତ୍ରୀ ସହିତ ଶୋଇଗଲା । ଘୁଙ୍ଗୁଡିର ଶବ୍ଦ ଛଡ଼ା ଆଉ କିଛି ଶୁଣାଗଲା ନାହିଁ । ରାଜା ଫେରି ଆସିଲେ ।

ରାଜା ବାଟରେ ଭାବିଲେ—ଯେଉଁ ଲୋକର ନଅଲକ୍ଷ ଟଙ୍କାର ମୁକ୍ତା ପୋଡି ପାଉଁଶ କରିବାରେ ଦ୍ୱିଧା ନଥିଲା, ସେ ଲୋକର ଧନ ନିଶ୍ଚୟ ଅକଳନ୍ତ । ତା ତୁଳନାରେ ରାଜ କୋଷରେ ଗଚ୍ଛିତ ଧନ ଅତି ନଗଣ୍ୟ । ସେ ରାଜା ସତ, କିନ୍ତୁ ଧନରେ ବଣିକ ତୁଳନାରେ ସେ ତୁଚ୍ଛ । ଏକଥା ଲୋକେ ଜାଣିଲେ ରାଜାଙ୍କର ପ୍ରାଧାନ୍ୟ କମିଯିବ । ତେଣୁ ସେ ଯେ ବଡ଼, ସେକଥା ତାଙ୍କୁ ଲୋକଚକ୍ଷୁରେ ପ୍ରମାଣ କରିବାକୁ ହେବ । ତାହା ହେଲେ ତାଙ୍କ ପ୍ରତି କାହାରି ନୀଚ ମନୋଭାବ ଆସିବ ନାହିଁ ।

ପରଦିନ ରାଜା ଦରବାରକୁ ଝରେ କଲେ । ସେ ଯେ ବଣିକ-ଠାରୁ ବଡ଼ ସେ କଥା ପ୍ରମାଣ କରିବାକୁ ସେ ପ୍ରଥମେ ସ୍ଥିର କଲେ । ତାପରେ ତାଙ୍କ ଆଦେଶରେ ବଣିକ ଧରାହୋଇ ଆସିଲା ।

ବଣିକକୁ ଦେଖି ରାଜା ନାଆଁ । ରାଜରୋଷର କାରଣ ସେ ଜାଣିପାରିଲା ନାହିଁ । ତେଣୁ ରାଜାଙ୍କ ସମ୍ମୁଖରେ ହାତଯୋଡ଼ି ମୁଣ୍ଡ ନୁଆଁଇ ସେ ଛିଡ଼ା ହୋଇରହିଲା ।

ରାଜା ବଣିକକୁ ବଡ଼ ଚଡ଼ାଗଳାରେ ପଚାରିଲେ, "ତମ ଓ ମୋ ଭିତରେ ବଡ଼ କିଏ ?"

ବଣିକଟି ଧୀରସ୍ଥିର ଭାବରେ କହିଲା—"ମହାରାଜ, ମୁଁ ଆପଣଙ୍କର ଜଣେ ପ୍ରଜା । ମୋ ସାଥିରେ ଆପଣଙ୍କ ତୁଳନା କରିବା ଆଦୌ ଉଚିତ ନୁହେଁ । ଏହାର ଉତ୍ତର କ'ଣ ଦେବି, ଭାବିଲେ ମୋତେ କଷ୍ଟ ଲାଗୁଛି ।"

ମନ ଭିତରେ ଭୂତ ପଶିଲେ, ସେ ସମ୍ପର୍କରେ କୌଣସି କଥା ଶୁଣିବାକୁ ଆଗ୍ରହ ହୁଏ ନାହିଁ । ରାଜାଙ୍କ ଅବସ୍ଥା ସେଇଆ । ବଣିକ କ'ଣ କହୁଛି, ରାଜା ଶୁଣିଲେ ନାହିଁ । ବରଂ ତାଙ୍କର କ୍ଷମତା ଜାହିର କରିବାକୁ ତାକୁ ଜେଲକୁ ପଠାଇଦେଲେ । ସେତିକିରେ ରାଜା ସନ୍ତୁଷ୍ଟ ହେଲେନାହିଁ । ତାପରେ ତା'ର ସ୍ତ୍ରୀକୁ ଧରିଆଣିଲେ । ତାକୁ ପ୍ରଶ୍ନ ହେଲା "ତମ ସ୍ୱାମୀ ଆଉ ମୋ ଭିତରେ ବଡ଼ କିଏ ?'

ରାଜାଙ୍କଠାରୁ ଏ ପ୍ରକାର ପ୍ରଶ୍ନ ତାର ଆଶାତୀତ ଥିଲା । ଏକଥା ଶୁଣି ସେ ଆବାକାବା ହୋଇଗଲା । ଉତ୍ତର ଦେଇପାରିଲା ନାହିଁ । ରାଜାଙ୍କ ଆଦେଶରେ ତାକୁ ଜେଲକୁ ନିଆଗଲା । ତାପରେ ଆସିଲା ପୁଅ । ତାକୁ ବି ସେଇ ପ୍ରଶ୍ନ । ସେ ବି ଉତ୍ତର ଦେଇପାରିଲା ନାହିଁ । ତାକୁ ମଧ୍ୟ ଜେଲକୁ ପଠାଇ ଦିଆଗଲା ।

ଏଥର ବୋହୂର ପାଳି । ରାଜାଦେଶରେ ସେ ବି ଦରବାରକୁ ଆସିଲା । ତାକୁ ମଧ୍ୟ ସେଇ ପୁରୁଣା ପ୍ରଶ୍ନ –"ତୋ ଶ୍ୱଶୁର ଆଉ ମୋ ମଧ୍ୟରେ କିଏ ବଡ଼ ?"

ସମସ୍ତଙ୍କର ରାଗ ସବୁସମୟରେ ଏକା ଅବସ୍ଥାରେ ରହେ ନାହିଁ । ନ ଜୁଆଇଲେ, ତାହା ବଢେ ବି ନାହିଁ । ଆସ୍ତେ ଆସ୍ତେ କମିଯାଏ । ରାତିର ରାଗ ରାଜାଙ୍କର ଆଉ ନ ଥିଲା । ବୋହୂ କଥା ଶୁଣିବାକୁ ତାଙ୍କର ଆଗ୍ରହ ହେଲା । ସେ ବୋହୂକୁ ଅଭୟ ଦେଲେ ।

ବୋହୂଟି କହିଲା–"ମହାରାଜ ! ମୋ ଶ୍ୱଶୁର କି ସ୍ୱାମୀ କେହି ବଡ଼ ନୁହନ୍ତି । ସମୟ କେବଳ ବଡ଼ ।"

ରାଜା ଏ ଉତ୍ତରରେ ସନ୍ତୁଷ୍ଟ ହେଲେ ନାହିଁ । ସେ ପଚାରିଲେ - "କିପରି ?"

ବୋହୂଟି କହିଲା, "କାଲି ସମୟ ଥିଲା–ମୋ ଶ୍ୱଶୁର ବଡ଼ଥିଲେ । ପାନଖଣ୍ଡେ ଖାଇବା ପାଇଁ ତାଙ୍କ ପୁଅ ନ'ଲକ୍ଷ ଟଙ୍କାର ମୋଟ ବି ପୋଡ଼ି ଦେଇଥିଲା । ଆଜି ସମୟ ଆସିଛି, ସ୍ୱାମୀ ବଡ଼ । ଆପଣଙ୍କ ଆଦେଶରେ ମୋ ଶ୍ୱଶୁର, ଶାଶୁ ଆଉ ସ୍ୱାମୀ କଏଦୀ-ଖାନାରେ । ତାଙ୍କର ସବୁ ଥାଇ ବି କିଛି ନାହିଁ ସେମାନେ ନିଃସ୍ୱ । ଉପବାସରେ ଦିନ କାଟୁଛନ୍ତି । ହଜୁରଙ୍କର ଆଦେଶ ନ ହେଲେ, ପାଣି ବି ଟୋପେ ତାଙ୍କୁ ମିଳିବ ନାହିଁ । ଏସବୁ ସମୟର କରାମତି । ସେଥିପାଇଁ ସମୟ ହିଁ ବଡ଼ ।"

କଥାଟା ରାଜାଙ୍କ ମନକୁ ପାଇଲା । ସେ ତତ୍କ୍ଷଣାତ୍ ବଣିକ, ତା ସ୍ତ୍ରୀ ଓ ପୁଅକୁ ଜେଲରୁ ଖଲାସ କରିଦେଲେ । କେବଳ ସେତିକି ନୁହେ, ବୋହୂ ଗହଣରେ ସେମାନଙ୍କୁ ସସମ୍ମାନେ ତାଙ୍କ ଘରକୁ ପଠାଇଦେଲେ ।

# ସବୁଠାରୁ ବଡ଼ ପେଟ କାହାର

ଥରେ ଜଣେ ରାଜା ଥିଲେ । ତାଙ୍କ ରାଜସଭାରେ ଜଣେ ବିଦୂଷକ ଥାଆନ୍ତି । ସେ ଖୁବ୍ ଚତୁର ଓ ବୁଦ୍ଧିମାନ । ଦିନେ ରାଜା ବିଦୂଷକଙ୍କୁ ପଚାରିଲେ – "କାହାର ପେଟ ବଡ଼ କହିପାରିବ କି ?'

"ମଣିଷର ଆକୃତି ଅନୁସାରେ ତାର ପେଟ" ଏହା ଥିଲା ବିଦୂଷକଙ୍କ ଉତ୍ତର ।

ଉତ୍ତରଟା ରାଜାଙ୍କ ମନକୁ ପାଇଲା ନାହିଁ । ତେଣୁ ସେ ପୁଣି ପଚାରିଲେ –"ସବୁଠାରୁ କାହାର ପେଟ ବଡ଼ ।"

ବିଦୂଷକ ଟିକେ ଚିନ୍ତାକଲେ । ତାପରେ କହିଲେ "ମହାରାଜ ! ଜମିଦାରମାନଙ୍କର ।"

"କିପରି ତୁମେ ଏହା କହୁଛ ।" - ପୁଣି ରାଜାଙ୍କର ପ୍ରଶ୍ନ ।

ବିଦୂଷକ ଅଟକିଗଲେ । କିଛି ଉତ୍ତର ନ ଦେଇ ଠିଆ-ହେଲେ । ତାପରେ ମେଲାଣି ମାଗି ସେଠୁ ଚାଲିଗଲେ ।

ସବୁଦିନପରି ତା ପରଦିନ ବି ଦରବାର ବସିଲା । ସବୁ ସଭାସଦ୍‌ମାନେ ଆସିଲେ । କିନ୍ତୁ ବିଦୂଷକଙ୍କର ଦେଖା ନାହିଁ ।

ରାଜା ବିଦୂଷକଙ୍କ ବିଷୟରେ ପଚାରିଲେ । ଦରବାରରେ ଟିକେ ଗୁଞ୍ଜରଣ ଖେଳିଗଲା । କିନ୍ତୁ ବିଦୂଷକଙ୍କ ବିଷୟରେ କେହି କିଛି ଜାଣି ନ ଥିଲେ । ତେଣୁ ସେଇଆ ହିଁ ଥିଲା ସଭାସଦ୍‌ମାନଙ୍କର ଉତ୍ତର ।

ବିଦୂଷକ ଯେ ଗୋଟିଏ ଗୁଳି ଖେଳିଲେ, ଏକଥା ରାଜା ଅନୁଭବ କଲେ । ତାଙ୍କୁ ଧରିଆଣି ଯାନେ ଦେବା ତାଙ୍କର ଇଚ୍ଛା । ତେଣୁ ସେ ବିଦୂଷକଙ୍କୁ ଖୋଜି ବାହାର କରିବାକୁ ଆଦେଶ ଦେଲେ ।

ରାଜାଙ୍କର ଆଦେଶ ଶିରୋଧାର୍ଯ୍ୟ । ତେଣୁ ପାଳନ ହେଲା । ରାଜାଙ୍କ ରାଜ୍ୟ ଓ ପଡ଼ୋଶୀ ରାଜ୍ୟରେ ଜୋରସୋରରେ ଅନୁସନ୍ଧାନ ଚାଲିଲା । ଖୋଜା ମଧ୍ୟ ଚାଲିଲା ତନ୍ନ ତନ୍ନ କରି । କିନ୍ତୁ ବିଦୂଷକଙ୍କ ଠେର କିଛି ମିଳିଲା ନାହିଁ ।

ଏଥର ରାଜା ବିଦୂଷକଙ୍କୁ ଖୋଜି ବାହାର କରିବାର ଦାୟିତ୍ୱ ନିଜେ ବହନ କଲେ ।

ରାଜାଙ୍କ ଗୋଠରେ ବହୁତ ଛେଳି । ସେ ସବୁକୁ ଗୋଠରୁ ଆଣି ଓଜନ କରାଗଲା । ପ୍ରତ୍ୟେକ ଜମିଦାରଙ୍କ ନିକଟକୁ ଗୋଟିଏ ଗୋଟିଏ ଛେଳି ପଠାଗଲା । ରାଜାଙ୍କର ଆଦେଶ ଥିଲା ଜମିଦାରମାନେ ନିଜ ତତ୍ତ୍ୱାବଧାନରେ ଏସବୁ ଛେଳି ପାଳନ କରିବେ । ଉତ୍ତମ ଖାଦ୍ୟ ଦେବେ । କିନ୍ତୁ ଛେଳିର ଓଜନ ଯେପରି ନ ବଢେ, ତା ପ୍ରତି ଦୃଷ୍ଟି ମଧ୍ୟ ଦେବେ । ଯଦି ଓଜନ ବଢେ, ତାହା ଏକ ଗୁରୁତର ଅପରାଧରେ ଗଣ୍ୟ ହେବ ।"

ଆଦେଶ ସହିତ ଛେଳିକୁ ଦେଖି ଜମିଦାରମାନେ ବ୍ୟସ୍ତ, ବିବ୍ରତ । କ'ଣ କରିବାକୁ ହେବ ସେମାନେ ଜାଣିପାରିଲେ ନାହିଁ । ସେମାନେ ସମସ୍ତେ ଚିନ୍ତିତ ଥାଆନ୍ତି ।

ବିଦୂଷକ ଯାଇ ଗୋଟିଏ ଜମିଦାରୀ ଇଲାକାରେ ଲୁଚିଥିଲେ । ସେ ଜମିଦାର ଛେଳିଟି ପାଇ ବ୍ୟସ୍ତ ହେବାର ଖବର ତାଙ୍କ କାନରେ ପଡ଼ିଲା । ବିଦୂଷକ ବନେ ଲୁଚିକରି ଆସି ଜମିଦାରଙ୍କୁ ଭେଟିଲେ ।

ବିଦୂଷକଙ୍କ ପରିଚୟ ପାଇ ଜମିଦାର ଭାରି ଖୁସି । କଥା ପ୍ରସଙ୍ଗରେ ରାଜାଙ୍କ ଅଦ୍ଭୁତ ଖିଆଲ କଥା ସେ ତାଙ୍କୁ କହିଲେ । ସେଥିରୁ ଉଦ୍ଧାର ପାଇବାପାଇଁ ବାଟ ବତାଇବାକୁ ତାଙ୍କୁ ଅନୁରୋଧ କଲେ ।

ବିଦୂଷକ କହିଲେ—"ମୁଁ ଆପଣଙ୍କୁ ପରାମର୍ଶ ଦେବି ସତ, କିନ୍ତୁ ଗୋଟିଏ ସର୍ତ୍ତରେ । ଏଠାରେ ମୋର ଆତ୍ମଗୋପନ କଥା ଯେପରି କେହି ଜାଣିପାରିବେ ନାହିଁ ।"

ଜମିଦାର ଅଭୟ ଦେଲେ । ତାପରେ ବିଦୂଷକ କହିଲେ— "ଜଙ୍ଗଲରୁ ଗଧିଆଟିଏ ଧରିଆଣିବାକୁ ହେବ । ସେ ଗଧିଆଟି ଏପରି ଭାବରେ ବନ୍ଧାହେବ, ଯେମିତିକି ଛେଳିଟି ତାକୁ ସବୁବେଳେ ଦେଖି ପାରୁଥିବ । ଆପଣ ଛେଳିକୁ ଯେତେ ଖାଦ୍ୟ ଦେଲେ ବି ସେ ଭୟରେ ମନବୋଧ କରି ଖାଇବ ନାହିଁ । ପେଟ ପୋଡିଗଲା-ବେଳେ ଖାଲି କ୍ଷୁଧା ନିବାରଣ ପାଇଁ ଯେତିକି ଦରକାର ସେତିକି ଖାଇବ । ବଳେ ବଳେ ସେ ଶୁଖିଯିବ ।"

ଜମିଦାରଙ୍କ ମନକୁ କଥାଟା ଖୁବ ପାଇଲା । ବିଦୂଷକଙ୍କ ପରାମର୍ଶ ଅନୁଯାଇ ସେ କାମ କଲେ ।

ଗୁହୁଁ ଗୁହୁଁ ଛ'ମାସ ବିତିଗଲା । ସବୁ ଜମିଦାରମାନେ ରାଜଦତ୍ତ ଛେଳି ଧରି ରାଜଧାନୀରେ ସମବେତ ହେଲେ । ଛେଳି ଓଜନ ହେଲା । ସବୁ ଛେଳିଙ୍କର ଓଜନ ବଢିଛି । କିନ୍ତୁ ବ୍ୟତିକ୍ରମ ଗୋଟିଏ ।

ଯେଉଁ ଛେଳିର ଓଜନ କମ୍, ତାକୁ ପାଳିଥିବା ଜମିଦାରଙ୍କୁ ରାଜାଙ୍କର ଡାକରା ପଡ଼ିଲା । ତାଙ୍କ ଛେଳିର ଓଜନ କାହିଁକି କମିଲା, ତାର କୈଫିୟତ ମାଗିଲେ ।

ଜମିଦାର କହୁଥିଲେ—"ଏଠୁ ଛେଳି ଯିବା ପୂର୍ବରୁ ରୋଗା ଥିଲା । ମୁଁ ବହୁତ ଚେଷ୍ଟା କଲି । କିନ୍ତୁ ଛେଳିର ଓଜନ ବଢିଲା ନାହିଁ । ବରଂ କମିଲା ।"

ରାଜା ଜମିଦାରଙ୍କ କଥାକୁ ବିଶ୍ୱାସ କଲେ ନାହିଁ । ଏ ଜମିଦାର ଯେ ଠିକ୍ କଥା କହୁନାହାନ୍ତି ଏଥିରେ ରାଜାଙ୍କର ତିଳେ ମାତ୍ର ଅବିଶ୍ୱାସ ନ ଥିଲା । କଥାଟା ଆଦାୟ କରିବାକୁ ସେ ଜମିଦାରଙ୍କୁ ବହୁତ ଧମକାଇଲେ । ଅଜସ୍ର ମୁଦ୍ରା ଉପହାର ଦେବେ ବୋଲି କହିଲେ । କିନ୍ତୁ ଜମିଦାରଙ୍କଠାରୁ କୌଣସି କଥା ସେ ଆଦାୟ କରିପାରିଲେ ନାହିଁ ।

ଜମିଦାରଙ୍କର ଗୁମର ଯେ ଖୁବ୍ ବେଶି, ରାଜା ତାହା ଅନୁଭବ କଲେ । ସେ ସାଙ୍ଗେ ସାଙ୍ଗେ ଘୋଷଣା କଲେ "ଯେ ବିଦୂଷକଙ୍କୁ ଧରି ଆଣିଦେବ, ତାକୁ ରାଜକୋଷରୁ ଦୁଇ ସହସ୍ର ମୁଦ୍ରା ମିଳିବ ।"

ଜମିଦାର ନିଜ ଜମିଦାରୀକୁ ଫେରିଗଲେ । ବିଦୂଷକଙ୍କ ସହ ଆଲୋଚନା କଲେ । ତାଙ୍କରି ପରାମର୍ଶରେ ସେ ବିଦୂଷକଙ୍କୁ ଆଣି ରାଜଦରବାରରେ ହାଜର କରାଇଲେ ।

ରାଜା ବିଦୂଷକଙ୍କୁ ଦେଖି ଖୁବ୍ ଖୁସି । ତାଙ୍କୁ ସେ କୁଣ୍ଢାଇ ପକାଇଲେ । ତାପରେ ପାଖରେ ବସେଇ କହିଲେ, "ମୁଁ ଦେଶସାରା ତନ୍ନ ତନ୍ନ କରି ତମକୁ ଖୋଜେଇଲି । କେଉଁଠି ହେଲେ ତମର ସନ୍ଧାନ ପାଇଲି ନାହିଁ ।"

ବିଦୂଷକ କହିଲେ, "ମହାରାଜ ! ମୁଁ ଜଣେ ଜମିଦାରଙ୍କ ଘରେ ଲୁଚିଥିଲି । ତାହା ବେଶିଦୂର ନୁହଁ । ଉଆସଠାରୁ ମୋଟେ

ଦୁଇକୋଶ ବାଟ । ତାଙ୍କର ପେଟ ଖୁବ୍ ବଡ଼ । ସ୍ୱାମୁଙ୍କର ଶତ-ଚେଷ୍ଟା ବି ସେ ପେଟରୁ ମତେ ଅଣ୍ଡାଳିକ [illegible] ।ର କରିପାରିଲା ନାହିଁ ।"

ରାଜା କହିଲେ, "ବିଦୂଷକ । ତମେ ପ୍ରକୃତରେ ସତ କହୁଛ ।"

ଜମିଦାରଙ୍କୁ ଡକାଇ ରାଜା ଉପଯୁକ୍ତ ପୁରସ୍କାର ଦେବାର ବ୍ୟବସ୍ଥା କରିଦେଲେ ।



# ଟଙ୍କାଲୋଭୀର ବୁଦ୍ଧି

ବହୁଦିନ ତଳେ ମଧ୍ୟପ୍ରଦେଶର ଗୋଟିଏ ରାଜ୍ୟରେ ବର୍ଷା ହେଲା ନାହିଁ । ଫଳରେ କାମଧନ୍ଦା ସବୁ ବନ୍ଦ ହୋଇଆସିଲା । ଲୋକେ ପେଟ ଜ୍ୱାଳାରେ ଘରଦ୍ୱାର ଛାଡ଼ି ପଳାଇଗଲେ । ପରେ ବ୍ରାହ୍ମଣୀଟିକୁ ଛାଡ଼ି ପେଟ ପାଇଁ ବ୍ରାହ୍ମଣଟି ଦକ୍ଷିଣକୁ ଚାଲିଗଲା ।

ବ୍ରାହ୍ମଣଟିର ଭାଗ୍ୟ ଭଲ । ସେ ଆସୁ ଆସୁ ଚାକିରିଟିଏ ପାଇଗଲା । ତାର ମାଲିକଟି ଭାରି ଭଲ । ତାର ଦରମାଟା ଠିକ୍ ସମୟରେ ତାକୁ ଦେଇଦିଅନ୍ତି । ବ୍ରାହ୍ମଣ ନିଜ ଖର୍ଚ୍ଚ ମେଣ୍ଟାଇ ଦି'ପଇସା ସଞ୍ଚେ । ଏହା ଭିତରେ ଦୁଇବର୍ଷ ବିତିଗଲା । ବ୍ରାହ୍ମଣ ପାଖିରେ ପାଞ୍ଚଶହ ଟଙ୍କା ହୋଇଗଲାଣି । ଏବେ ଗାଁକୁ ଯିବାକୁ ତାର ମନ ଉଚ୍ଛନ୍ନ । ଦିନେ ତା ମାଲିକଠାରୁ ଅନୁମତି ଆଣି ସେ ଗାଁକୁ ବାହାରି ପଡ଼ିଲା ।

ବାଟରେ ବ୍ରାହ୍ମଣଟି ଭାବିଲା···ବହୁଦିନ ହେଲା ସେ ଗାଁ ଛାଡ଼ି ଆସିଛି । ସେତେବେଳେ ଅଭାବ ଅନାଟନ ଲାଗିରହିଥିଲା । ବ୍ରାହ୍ମଣୀଟି ଘରେ ଯାହାଥିଲା, ସେଥିରେ ଚଳିପାରି ନଥିବ ? ଧାର ଉଧାର କରିଥିବ । ସେ ପହଞ୍ଚିବା ମାତ୍ରେ ମହାଜନମାନେ ଶୁଣି ମାଡ଼ିଆସିବେ । ତା'ପାଖରେ ଟଙ୍କା ନାହିଁ ବୋଲି ମିଛ ତ କହି ହେବ ନାହିଁ ! ବାଧ ହୋଇ ଟଙ୍କାତକ ତାକୁ ଦେଇଦେବାକୁ ହେବ । ତାର ପରଘରେ ଖଟିବା ପରିଶ୍ରମ ଖାଲି ବୃଥା ହୋଇଯିବ । ସେ ସ୍ଥିର କଲା ବାଟରେ ଟଙ୍କାତକ ରଖିଦେଇ ଯିବ । ଦରକାର ପଡ଼ିଲେ ପଛେ ଆସି ଟଙ୍କାତକ ନେଇଯିବ ।

ସେତେବେଳେ ବ୍ୟାଙ୍କସବୁ ନ ଥିଲା । ଘର ପାଖରେ ଲୋକେ ଟଙ୍କା ଗଚ୍ଛିତ ରଖୁଥିଲେ । ସେସବୁ ବିଶ୍ୱାସରେ ଚାଲେ । ବ୍ରାହ୍ମଣଟି ଗୋଟିଏ ବିଶ୍ୱାସୀ ଲୋକ ଖୋଜିବୁଲିଲା ।

ଲୋକଙ୍କ ମୁଖରୁ ଶୁଣିଲା ବାଟ ଦୋକାନୀଟି ଭାରି ବିଶ୍ୱାସୀ । ବାହ୍ମଣଟି ତା' ପାଖକୁ ଗଲା । ଟଙ୍କା ତା' ପାଖରେ ରଖିବା ନେଇ କଥାବାର୍ତ୍ତା କରୁଥାଏ, ଏତିକିବେଳେ ଜଣେ ସନ୍ନ୍ୟାସୀ ଭିକ ପାଇଁ ଆସିଲେ । ଦୋକାନୀକୁ ବ୍ରାହ୍ମଣଠାରୁ ଟଙ୍କା ପାଇବାର ଲୋଭ ଗ୍ରାସୁଥାଏ । ଦୋକାନୀଟି ଦେଖିଲା ସନ୍ନ୍ୟାସୀଟି ରହିଲେ କଥାରେ ତାର ବିଭ୍ରାଟ ହେବ । ସେଥିପାଇଁ ବହୁତ କିଛି ଭିକ ସେ ସନ୍ନ୍ୟାସୀଙ୍କୁ ଦେଇଦେଲା । ଏତେ ଭିକ ଦେଖି ସନ୍ନ୍ୟାସୀ ଭାରି ଖୁସି । ଭିକତକ ଧରି ସିଧା ସନ୍ନ୍ୟାସୀଟି ଚାଲିଗଲା ।

କଥାବାର୍ତ୍ତା ଦୋକାନୀ ସାଥିରେ ଛିଣ୍ଡି ନାହିଁ, ବ୍ରାହ୍ମଣଟି ଦେଖିଲା – ସନ୍ନ୍ୟାସୀଟି ପୁଣି ଭିକ୍ଷାପାତ୍ର ଧରି ଦୋକାନରେ ହାଜର । ଦୋକାନୀ ପଚାରିବା ପୂର୍ବରୁ ସନ୍ନ୍ୟାସୀଟି କହିଲା—"ତମର ଭିକ୍ଷା ବହୁତ ହୋଇଗଲା । ତାକୁ ଦେଖି ମୋର ଗୁରୁ ବିରକ୍ତ ହେଲେ । ତାଙ୍କ ମତରେ ଭିକ୍ଷା ଅଧିକ ନେବା ଉଚିତ୍ ନୁହେଁ । ଜଣେ ଅନ୍ୟ କାମରେ ବ୍ୟସ୍ତ ଥିଲେ ଭିକାରୀକୁ ଶୀଘ୍ର ବିଦା କରିବା ପାଇଁ ଅଧିକ ଭିକ ଦେଇଥାଏ । ସେ ଭିକ୍ଷା ଗ୍ରହଣଯୋଗ୍ୟ ନୁହଁ । ଫେରସ୍ତ ଦେଇଦେବାର କଥା । ଗୁରୁଙ୍କ ଆଗରେ ମୁଁ ସ୍ୱୀକାରକଲି ଯେ, ଦୋକାନୀ ଅନ୍ୟ ଜଣେ ବ୍ରାହ୍ମଣସହ କଥାବାର୍ତ୍ତାରେ ବ୍ୟସ୍ତଥିଲେ । ତେଣୁ ସେ ମୋତେ ଅଧିକ ଭିକ ଦେଇଛନ୍ତି । ଗୁରୁ କ୍ଷୁବ୍ଧ ହୋଇ ମୋତେ ତମ ଭିକ୍ଷା ଫେରସ୍ତ କରିଦେବାକୁ ଆଦେଶ ଦେଇଛନ୍ତି । ତୁମେ ଏତକ ଗ୍ରହଣ କର । ତମର ସ୍ୱଇଚ୍ଛାରେ ଯାହା ଭିକ ଦେବ, ଦିଅ ।"

ବ୍ରାହ୍ମଣ ସନ୍ନ୍ୟାସୀର କଥାଶୁଣି ଭାବିଲା—ସଂସାରରେ ଏପରି ନିସ୍ପୃହ ଆଧ୍ୟାତ୍ମିକ ଲୋକ ବିରଳ । ବ୍ୟବସାୟୀଠାରୁ ସେ ଅଧିକ ବିଶ୍ୱାସଜନକ । ତେଣୁ ଗୁରୁଙ୍କ ପାଖରେ ତାର ଟଙ୍କା ରଖିବା ଉଚିତ୍ । ସେ ଦୋକାନରୁ ଉଠିଲା । ସନ୍ନ୍ୟାସୀର ପଛେ ପଛେ ଯାଇ ଗୁରୁଙ୍କ ଆଶ୍ରମରେ ପହଞ୍ଚିଲା । ଗୁରୁଙ୍କ ଆଗରେ ସାଷ୍ଟାଙ୍ଗ ପ୍ରଣିପାତ କରି କହିଲା "ମହାଭାଗ, ମୋତେ ଟିକିଏ ଦୟା କରନ୍ତୁ । ମୋର ସଞ୍ଚିତ ଧନକକ ରଖନ୍ତୁ । ମୁଁ ଫେରିଆସିଲେ ଏତକ ନେବି ।"

ଗୁରୁ ଟିକିଏ ହସିଲେ । ତାଙ୍କର ନିର୍ଦ୍ଦେଶରେ ବ୍ରାହ୍ମଣ ଘର ଭିତରକୁ ଗଲା । ସେଠି ଗୋଟିଏ ଗାତକରି ଟଙ୍କାତକ ପୋତି-ଦେଲା । ତାପରେ ଗୁରୁ କହିଲେ "ବାବା, ତମର ଏଠି ଟଙ୍କାତକ ରହିଲା । ତୁମେ ଯେବେ ଚାହିଁବ, ଏଠାକୁ ଆସି ଖୋଳିକରି ନେଇଯିବ ।" ଗୁରୁ ଯେ ଏକଦମ୍ ନିଃସ୍ୱାର୍ଥପର ଏବଂ ଏପରିକି ପରଧନ ସ୍ପର୍ଶ କରିବାକୁ ସେ ପ୍ରସ୍ତୁତ ନୁହନ୍ତି – ଏହାହିଁ ବ୍ରାହ୍ମଣର ଧାରଣା । ତା'ର ଧନ ଯେ ନିରାପଦ, ଏଥିରେ ତାର ଆଉ ସନ୍ଦେହ ନ ଥିଲା । ସେ ଆନନ୍ଦରେ ଘରକୁ ଚାଲିଗଲା ।

ଘରେ ପହଞ୍ଚି ବ୍ରାହ୍ମଣ ବୁଝିଲା ଯେ, ସ୍ତ୍ରୀ ତାର ଧାର କରି ନାହିଁ । ଦୁଃଖେ କଷ୍ଟେ ଚଳିଯାଇଛି । କିଛିଦିନ ଘରେ ରହି ବ୍ରାହ୍ମଣ ଗୁରୁଙ୍କ ପାଖକୁ ଆସିଲା । ତାର ଟଙ୍କାଟା ଫେରାଇ ନେବାକୁ ସେ ଅନୁରୋଧ କଲା । ସେତେବେଳକୁ ଗୁରୁ ତାଙ୍କ ଶିଷ୍ୟ ଗହଣରେ ବସିଥିଲେ । ବ୍ରାହ୍ମଣର କଥାଶୁଣି ଗୁରୁ ତାକୁ ଚାହିଁଲେ । ତାଙ୍କ ଚାହାଣିରୁ ଜଣା ପଡୁଥାଏ, ସତେକି ବ୍ରାହ୍ମଣକୁ ସେ ଜାଣନ୍ତି ନାହିଁ । କିଛି ସମୟପରେ ଗୁରୁ କହିଲେ "ବାବା, ତୁମେ କ'ଣ ମୋ ପାଖରେ ଟଙ୍କା ରଖିଯାଇଥିଲ ?"

ଗୁରୁଙ୍କର ଏ ପ୍ରସ୍ନ କେବଳ ଯେ ଶଠତା, ଏଥିରେ ବ୍ରାହ୍ମଣ ଦୃଢ଼ । ଗୁରୁଙ୍କର ଶିଷ୍ୟ ବହୁତ । ସେମାନଙ୍କ ମଧ୍ୟରେ ଅନେକ ଧନୀ । ଗୁରୁଙ୍କର ସୁନାମ ଖୁବ୍ ବେଶି । ଯୁକ୍ତି ତର୍କ କଲେ, ଫଳ ଖରାପ ହେବ । ଲୋକେ ତାକୁ ଭୁଲ ବୁଝିବେ । ବ୍ରାହ୍ମଣଟି ମନ-କଷ୍ଟରେ ସେଠୁ ବିଦାୟ ନେଲା । ସେ ଜମିଦାରଙ୍କ ପାଖକୁ ଯାଇ ଗୁହାରି କଲା । ଜମିଦାର ତାର କଥା ମନଦେଇ ଶୁଣିଲେ । ସେ ଏକ ଦୀର୍ଘନିଃଶ୍ୱାସ ପକାଇ କହିଲେ—“ତମ କଥାରେ ମୋର ଅବିଶ୍ୱାସ ନାହିଁ । କିନ୍ତୁ ତମକୁ ସାହାଯ୍ୟ କରିବା ମୋର ଶକ୍ତିର ବାହାରେ । ତୁମେ ପାଖ ଗାଁକୁ ଯାଅ । ସେଠି ଜଣେ ନର୍ତ୍ତକୀ ଅଛି । ତାର ବୁଦ୍ଧି ପ୍ରଖର । ତାକୁ ତମର ଦୁଃଖ କୁହ । ସେ ଚାହିଁଲେ ତମକୁ ସାହାଯ୍ୟ କରିପାରେ ।”

ଜମିଦାରଙ୍କ କଥା ବ୍ରାହ୍ମଣଟି ମାନିଲା । ସେ ନର୍ତ୍ତକୀ ପାଖକୁ ଯାଇ ତାର ସବୁ ଦୁଃଖ କହିଲା ।

ନର୍ତ୍ତକୀ ତାକୁ ଆଶ୍ୱାସନା ଦେଇ କହିଲା “ବ୍ୟସ୍ତ ହୋଇ ଲାଭ ନାହିଁ । ଆସନ୍ତା ପୂର୍ଣ୍ଣିମୀ ଦିନ ଦି ପ୍ରହରକୁ ତୁମେ ଗୁରୁଙ୍କ ଆଶ୍ରମକୁ ଯିବ । ମୁଁ ଗୁରୁଙ୍କ ପାଖରେ ଥିବି । ସେତିକବେଳେ ତୁମେ ତମ ଟଙ୍କା ମାଗିବ ।”

ନିର୍ଦ୍ଦିଷ୍ଟ ଦିନ ନିର୍ଦ୍ଦିଷ୍ଟ ସମୟରେ ନର୍ତ୍ତକୀଟି ତାର ମୂଲ୍ୟବାନ ଅଳଙ୍କାର ଓ ଗଚ୍ଛିତ ଧନ ଧରି ଗୁରୁଙ୍କ ଆଶ୍ରମକୁ ଗଲା । ସେତେ-ବେଳକୁ ଗୁରୁ ଆରାମ କରୁଥାନ୍ତି । ସବୁ ଅଳଙ୍କାର ଓ ଧନତକ ଥୋଇ ନର୍ତ୍ତକୀ ଗୁରୁଙ୍କ ଗୋଡ଼ତଳେ ପଡ଼ିଗଲା । ତାପରେ ଉଠି କହିଲା “ସ୍ୱାମୀ, ମୋର ମରଦନା ମେଳା ଦେଖିବାକୁ ଯାଇଛନ୍ତି । ମାସୁଟିଏ ବିତିଗଲା । ସେ ଫେରିଲେ ନାହିଁ । ମୁଁ ତାଙ୍କ ପାଇଁ ଘାରି ବ୍ୟସ୍ତ । ଘରେ ମୋର କେହି ନାହାନ୍ତି । ମୁଁ ତାଙ୍କୁ ଖୋଜିବାକୁ

ଯାଉଛୁ । ବିଦେଶରେ କେତେ ଦିନ ରହିବି, ଠିକ୍ ନାହିଁ । ମୋର ଏତକ ଅଳଙ୍କାର ଓ ଧନ ଅଛି । ଘରେ ଏହାକୁ ରଖିବା ନିରାପଦ ନୁହେଁ । ଏହାକୁ କେଉଁଠି ନିରାପଦରେ ରଖିବି, ସେ ବି ମୋର ଗୋଟେ ଚିନ୍ତା । ଆପଣଙ୍କ ପାଖରେ ରଖିଲେ ନିରାପଦରେ ଏହା ରହିବ । ତେଣୁ ଧାଇଁ ଆସିଛି । ନିରାଶ କରନ୍ତୁ ନାହିଁ । ଦୟା କରନ୍ତୁ ! ମୁଁ ଆସିବା ଯାଏ ଏତକ ରଖିବାର ବ୍ୟବସ୍ଥା କରି-ଦିଅନ୍ତୁ ।" ନର୍ତ୍ତକୀର ଅଳଙ୍କାର ଓ ଗଚ୍ଛିତ ଧନ ଦେଖି ଗୁରୁଙ୍କର ଲୋଭ ହେଲା । ଆଖି ତାଙ୍କର ଉଜ୍ଜ୍ୱଳ ଉଠିଲା । ଠିକ୍ ଏତିକି-ବେଳେ ବ୍ରାହ୍ମଣଟି ସେ ଘରକୁ ପଶି ଆସି ମୁଣ୍ଡିଆ ମାରିଲା । ତାପରେ କହିଲା "ମହାରାଜ, ଦୟାକରି ମୁଁ ରଖିଥିବା ମୋର ପାଞ୍ଚଶହ ଟଙ୍କା ମୋତେ ଦେଇ ଦିଅନ୍ତୁ ।"

ଗୁରୁ ଟିକିଏ ଭାବିଲେ । ସେ ଜାଣନ୍ତି - ଯଦି ବ୍ରାହ୍ମଣକୁ ଫାଙ୍କି ଦେବେ, ସ୍ତ୍ରୀଲୋକଟିର ତାଙ୍କ ଉପରେ ବିଶ୍ୱାସ ହେବ ନାହିଁ । ସେ ଆଣିଥିବା ଅଳଙ୍କାର ଓ ଧନ ନେଇ ଚାଲିଯିବ । ବ୍ରାହ୍ମଣକୁ ସନ୍ତୋଷରେ ବିଦାକଲେ ସ୍ତ୍ରୀଲୋକଟିର ବିଶ୍ୱାସ ବଢ଼ିଯିବ । ତେଣୁ ସେ ଶୀଘ୍ର ଶୀଘ୍ର ବ୍ରାହ୍ମଣକୁ ବିଦା କରିବା ପାଇଁ ଭିତର ଘରକୁ ଗଲେ । ପାଞ୍ଚଶହ ଟଙ୍କା ଆଣି ବ୍ରାହ୍ମଣକୁ ଦେଲେ । ସୁବିଧାରେ ବ୍ରାହ୍ମଣ ଟଙ୍କା ପାଇଗଲା । ନର୍ତ୍ତକୀଟି ଏ କଥା ଦେଖି ଖୁସି ହେଲା ।

ବ୍ରାହ୍ମଣ ଫେରିବାକୁ ବାହାରିଲା । ନର୍ତ୍ତକୀଟି ତାର ଅଳଙ୍କାର ଓ ଧନ ଧରି ଠିଆ ହେଲା । ସେ ଗୁରୁଙ୍କୁ କହିଲା—"ଏ ଭାଇନା କହୁଛନ୍ତି, ମୋର ସ୍ୱାମୀ ଫେରି ଆସିଲେଣି । ଆପଣ କଷ୍ଟକରି ମୋର ଅଳଙ୍କାର ଓ ଧନ ରଖିବାର ଆବଶ୍ୟକତା ଆଉ ନାହିଁ ।" ଏତକ କହି ନର୍ତ୍ତକୀଟି ହସିଦେଲା । ତାହା ଦେଖି ବ୍ରାହ୍ମଣ ବି ହସିଲା ।



# ପରୀକ୍ଷା

ସୂର୍ଯ୍ୟ ଦେବତାଙ୍କର ଅନ୍ୟ ନାମ ସୂର୍ଯ୍ୟ ନାରାୟଣ ।

କାହିଁ କେତେ କାଳର କଥା । ସେତେବେଳେ ସୂର୍ଯ୍ୟନାରାୟଣଙ୍କର ମା' ଓ ସ୍ତ୍ରୀ ଥିଲେ । ରାଜ୍ୟ ବି ଥିଲା ।

ସୂର୍ଯ୍ୟ ଦେବତାଙ୍କର ବ୍ୟବସ୍ଥା ଅତି ଉତ୍ତମ, ସେଥିପାଇଁ କେଉଁ ପ୍ରକାର କଷ୍ଟ ଅସୁବିଧା ହେଉ ନ ଥିଲା । ତାଙ୍କ ରାଜ୍ୟରେ ପ୍ରଜାମାନେ ଖୁବ୍ ଖୁସିରେ ଥିଲେ । କିନ୍ତୁ ତାଙ୍କର ମା' ଓ ସ୍ତ୍ରୀ ସୁବିଧାରେ ନ ଥିଲେ । ସେମାନେ ଦୁଇବେଳା ଦି'ଟା ଭଲରେ ଖାଇବାକୁ ପାଉ ନ ଥିଲେ । ବେଳେ ବେଳେ ସେମାନେ ଉପାସ ରହିବାକୁ ବାଧ୍ୟ ହେଉଥିଲେ ।

କେତେ ଦିନ ଏପରି ଚାଲିବ, ସ୍ତ୍ରୀ ତାଙ୍କର ଜାଣି ପାରିଲା ନାହିଁ । ଦିନେ ବାଧ୍ୟ ହୋଇ ଶାଶୁଙ୍କ ପାଖରେ ମୁହଁ ଖୋଲି କହିଲା — "ତମକୁ ବାଧୁଛି କି ନାହିଁ, ମୁଁ କହି ପାରିବି ନାହିଁ । କିନ୍ତୁ ମୋର ଉପାସ ରହିବାଟା ଆଉ ସହି ହେଉ ନାହିଁ । ତୁମେ ଟିକିଏ ଯାଇ ତମ ପୁଅକୁ କୁହ, ସେ ତାଙ୍କ ବ୍ୟବସ୍ଥାର ପରିବର୍ତ୍ତନ କରନ୍ତୁ । ଆମକୁ ଦୁଇବେଳା ଦୁଇଟା ଭଲରେ ଖାଇବାକୁ ମିଳୁ ।"

ବୁଢ଼ୀ ଟିକିଏ ବୋହୂ ମୁହଁକୁ ଅନାଇଲେ । ତାଙ୍କୁ ମଧ୍ୟ ଉପାସ ବାଧୁଛି । କିନ୍ତୁ ଯେତେହେଲେ ସେ ମା । ପୁଅର ବଦନାମ କରିବାକୁ ସେ ଚାହାନ୍ତି ନାହିଁ । ସ୍ତ୍ରୀ କଥା ଭିନ୍ନ । ଦୁଃଖ କଷ୍ଟ ରହିବାର ଗୋଟାଏ ସୀମା ଅଛି । ସେ ବା ସବୁବେଳେ ଦୁଃଖ କଷ୍ଟ କାହିଁକି

ସେ ନିଜର ମୁହଁ ରଖିବାପାଇଁ କହିଲେ—"ମୋ ପୁଅ ଜୀବ ଜଗତର ପ୍ରାଣ । ସମସ୍ତଙ୍କୁ ସମାନ ଆଖିରେ ସେ ଦେଖେ । ପାତର ଅନ୍ତର କରିବା ତା'ପକ୍ଷେ ଅସମ୍ଭବ । ଆମର ଅସୁବିଧା ବହୁତ । ଏହା ସତ । ସେ ଏସବୁ ଜାଣୁନଥିବ, ତାହା କହିବା ବି ଭୁଲ । ଏପରି ଅବସ୍ଥାରେ ତାକୁ ଆମ ଦୁଃଖ ନ କହିବା ଉଚିତ୍ ।"

ବୋହୂ କହିଲା "ମା, ତୁମେ କିଛି ବୁଝୁନାହଁ । ଦେବତା ହେଲେ ବି ମଣିଷର ମନର କଥା ଜାଣିବା କଷ୍ଟ । ତେଣୁ ତାଙ୍କୁ ଜଣାଇବାକୁ ହେବ । ଏକଥା ତୁମେ ହିଁ କେବଳ କହିପାରିବ ।"

ବୁଢୀ ଭାବିଲେ—ମୋ କଥା ଦୋଷରି । ବୋହୂ ପର ଘରର ଝିଅ । ସୁଖ ଶାନ୍ତି ପାଇଁ ଏ ଘରକୁ ଆସିଛି । ସେ ଦୁଃଖରେ ରହିବାଟା ସୁନ୍ଦର ନୁହେଁ । ସେ ନିଶ୍ଚୟ ପୁଅକୁ ସବୁ କଥା କହିବେ । ବାପରେ । ସେ ବୋହୂକୁ କହିଲେ— "ମାଲୋ, ତୁ ଯା, ମୁଁ ସବୁ କଥା ପୁଅକୁ କହିବି ।"

ସବୁଦିନ ପରି ବେଳ ବୁଡିଲା । ସୂର୍ଯ୍ୟ ଘରକୁ ଆସିଲେ । ବୁଢୀ ତାଙ୍କ ସାଥୀ ସାଥୀ ଶୋଇବା ଘରକୁ ଗଲେ । ଏକଥା । ବି ବୋହୂର ନଜରରେ ପଡିଲା । ମା ପୁଅ ଆଗେ ଚାଲିଥାନ୍ତି । ପଛରେ ଲୁଚିକରି ବୋହୂ ଚାଲିଥାଏ । ଘରେ ମା' ପୁଅ ପଶିଲେ । ବାହାରେ ବୋହୂ । ଏତିକିବେଳେ ମା' ତାର ଓ ବୋହୂର ଦୁଃଖ କଥା ଟିକିନିଖି କରି ସୂର୍ଯ୍ୟ ଦେବତାଙ୍କୁ କହିଲେ ।

ସୂର୍ଯ୍ୟନାରାୟଣ ଧୀରସ୍ଥିର ଭାବରେ ସବୁ କଥା ଶୁଣିଲେ । ତା'ପରେ ସେ ପଚାରିଲେ "ଏପରି ଅବସ୍ଥାରେ ତୁମେ କିପରି ଏତେ ଦିନ ରହିଛ ?"

ମା' କହିଲେ– "କ୍ଷୁଧା ଅତ୍ୟନ୍ତ ଭୟଙ୍କର । ତାର ଜ୍ୱାଳା କେହି ସହିପାରେ ନାହିଁ । ଏଥିପାଇଁ ମଣିଷ ଆତ୍ମସମ୍ମାନ ବି ହରାଏ । ଆମେ ଶାଶୁ ବୋହୂ ଆମର ଖାଦ୍ୟ ଆମେ ପ୍ରସ୍ତୁତ କରୁ । ଅଲଗା ଅଲଗା ବି ରଖୁ । ଯେତେବେଳେ ମୋତେ ଆଗ ଭୋକ ହୁଏ, ମୋର ଖାଦ୍ୟ ମୋତେ ଅଣ୍ଟେ ନାହିଁ, ମୁଁ ବୋହୂର ଖାଦ୍ୟ ଖାଇଦିଏ । ବୋହୂଟି ଖାଡ଼ା ଖାଡ଼ା ଉପାସ ରହେ । ଠିକ୍ ସେଇପରି ବୋହୂକୁ ଆଗ ଭୋକ ହେଲେ, ସେ ମୋ ପାଇଁ ଥିବା ଖାଦ୍ୟକୁ ଖାଇଦିଏ । ମୁଁ ବି ଉପାସରେ ରହେ ।"

ସୂର୍ଯ୍ୟନାରାୟଣ ମା ଓ ସ୍ତ୍ରୀର କଷ୍ଟ ଦେଖି ବ୍ୟସ୍ତ, ଲଜ୍ଜିତ । ସେ କହିଲେ—"ଏଥର ଯାଅ, ଭବିଷ୍ୟତରେ କିଛି ଆଉ ଅସୁବିଧା ହେବ ନାହିଁ ।"

ସେଦିନ ବି ଚୂଲି ଲିପି ଶାଶୁ ବୋହୂ ରାନ୍ଧି ବସିଲେ । ସବୁ ଖାଦ୍ୟ ପ୍ରଚୁର । ଯେତେ ଖାଇଲେ ବି ତାହା ଅସରନ୍ତି । ଶାଶୁ ବୋହୂ ଉଭୟେ ସନ୍ତୁଷ୍ଟ । ସେଇଦିନୁ ଅଭାବ ତାଙ୍କର ଉଭେଇ-ଗଲା ।

ସୂର୍ଯ୍ୟନାରାୟଣ ପ୍ରତିଦିନ ଘରକୁ ଆସନ୍ତି । ରାତିରେ । ନିଭୃତ ସମୟରେ । ତାଙ୍କ ଆସିବା କଥା କେହି ପ୍ରାୟ ଜାଣନ୍ତି ନାହିଁ । ତାଙ୍କର ସ୍ତ୍ରୀ ଗର୍ଭବତୀ ହେଲା । କଥାଟା ଲୁଚି ରହିଲା ନାହିଁ । ପ୍ରଜାମାନେ ଫୁସ୍ ଫାସ୍ ହେଲେ । କାନରୁ ଦି'କାନ, ଦି'କାନରୁ ତିନି କାନ, ଏମିତି ହୋଇ ହୋଇ ସହସ୍ର କାନ ହେଲା । ରାଜ୍ୟସାରା ଏଇ ବିଷୟରେ ଆଲୋଚନା । ଖଳଲୋକ-ମାନେ ଉଭୟ ସୂର୍ଯ୍ୟନାରାୟଣ ଓ ତାଙ୍କ ସ୍ତ୍ରୀର ବଦନାମ କଲେ । କିନ୍ତୁ ସେମାନଙ୍କର ସାହାସ ନ ଥିଲା । ସେମାନେ ଏ ବିଷୟରେ ଶାଶୁ କି ବୋହୂକୁ କିଛି ପଚାରି ପାରିଲେ ନାହିଁ ।

ଠିକ୍ ସମୟରେ ପୁଅଟିଏ ହେଲା । ଦେଖିବାକୁ ଦିବ୍ୟସୁନ୍ଦର । ବାପଠାରୁ ଆହୁରି ତେଜସ୍ବୀ । ଯେ ଦେଖିଲା, ଖୁସି ହୋଇଗଲା । କିନ୍ତୁ ବଦନାମ କରୁଥିବା ଲୋକଙ୍କର ପାଟି ବନ୍ଦ ହେଲା ନାହିଁ । ବରଂ ବଢ଼ି ଚାଲିଲା । କଥାଟା ସୂର୍ଯ୍ୟନାରାୟଣଙ୍କ କାନକୁ ଗଲା । ସେ ଏ ବିଷୟରେ କିଛି କହିଲେ ନାହିଁ ।

ଏହା ଭିତରେ କେତେଦିନ ଚାଲିଗଲାଣି । ସୂର୍ଯ୍ୟନାରାୟଣ-ଙ୍କର ପୁଅ ବେଶ୍ ବଡ଼ଟିଏ ହୋଇଗଲାଣି । ଲୋକେ ତାକୁ ଦେଖିଲେ, ଠଗାଠରି ହୁଅନ୍ତି । ଏକଥା ସୂର୍ଯ୍ୟଦେବତାଙ୍କର କାନରେ ପଡ଼େ ।

ଦିନେ ସୂର୍ଯ୍ୟଦେବତା ତାଙ୍କ ରଥରେ ଘରକୁ ଫେରୁଥାନ୍ତି । ପଛରେ ଅସଂଖ୍ୟ ରଥ । ବିରାଟ ପଦାତିକ ବାହିନୀ । ରାସ୍ତାର ଦୁଇ-ପଟେ ଅଗଣିତ ପ୍ରଜା ତାଙ୍କୁ ସ୍ୱାଗତ ଜଣାଉଥାନ୍ତି । ହଠାତ୍ ରଥ ଅଟକି ଗଲା । ଯେତେ ଚେଷ୍ଟା ହେଲେ ମଧ୍ୟ ରଥ ଟିକିଏ ବି ଟସ୍କିଲା ନାହିଁ । ସେନା ସାମନ୍ତ ଆଉ ପ୍ରଜାମାନେ ବ୍ୟସ୍ତ । ବିଚଳିତ । ଚିନ୍ତିତ ।

ଖଳ ଲୋକଙ୍କର ଗତି ବିଚିତ୍ର । ଘୋଳିଆ ପାଣିରେ ମାଛ ଧରିବାରେ ସେମାନେ ସିଦ୍ଧହସ୍ତ । ସେମାନେ ଏଇ ମଉକାରୁ ଫାଇଦା ଉଠାଇବା ପାଇଁ ତତ୍ପର । ସେମାନେ କହିଲେ "ଆମ ସୂର୍ଯ୍ୟନାରାୟଣ ଅସୀମ ଶକ୍ତିର ଆକର । ତାଙ୍କ ଔରସର ପୁଅ ସର୍ବଶକ୍ତିମାନ ହୋଇଥିବ । ସେ ଆସନ୍ତୁ । ରଥକୁ ଠେଲନ୍ତୁ । ରଥ ଯଦି ଚାଲିବ, ସେ ପ୍ରକୃତରେ ସୂର୍ଯ୍ୟଦେବତାଙ୍କ ପୁଅ ବୋଲି ପରିଚିତ ହେବେ ।"

ପ୍ରଜାମାନେ ଏକଥା ଶୁଣି ଖୁସି ହୋଇଗଲେ । ଭଦ୍ରଲୋକମାନେ ହାୟ ହାୟ କଲେ । ସେମାନେ ଭାବିଲେ..."ଅଗଣିତ ସୈନ୍ୟସାମନ୍ତ

ଓ ପ୍ରଜାମାନଙ୍କ ଚେଷ୍ଟାରେ ଯେଉଁ ରଥ ହଲୁ ନାହିଁ, ସେ କ'ଣ ଗୋଟେ ପିଲାର ଚେଷ୍ଟାରେ ଗଡ଼ିବ ? ଖାଲି ବଦନାମ ରଟିବା ପାଇଁ ଏ ଗୋଟିଏ ଚକ୍ରାନ୍ତ ।" ଭଦ୍ରଲୋକମାନେ ପ୍ରତିବାଦ କଲେ । ତାଙ୍କ କଥା କେହି ଶୁଣିଲେ ନାହିଁ । ଶେଷକୁ ଖଳଲୋକଙ୍କ କଥା ହିଁ ରହିଲା ।

ଏ କଥା ସୂର୍ଯ୍ୟନାରାୟଣଙ୍କ କାନକୁ ଗଲା । ସେ ପୁଅ ଯେ ତାଙ୍କର, ଏ ବିଷୟରେ ସେ ନିଃସନ୍ଦେହ । ତଥାପି ସେ ପ୍ରତିବାଦ କଲେ ନାହିଁ । ସେ ଜାଣନ୍ତି ସେ ରାଜା । ପ୍ରଜାମାନଙ୍କ ମନ ନେଇ ଶାସନ କରିବାକୁ ହେବ । ପ୍ରଜାମାନଙ୍କର ସନ୍ଦେହ ଘୁଞ୍ଚାଇବା ତାଙ୍କର କର୍ତ୍ତବ୍ୟ । ତାଙ୍କୁ ସ୍ତ୍ରୀଙ୍କର ନିର୍ମଳ ଚରିତ୍ର ପ୍ରମାଣିତ ହେବା ଦରକାର । ନ ହେଲେ, ପ୍ରଜାମାନେ ଅସନ୍ତୁଷ୍ଟ ହେବେ । ବିଷ କୁହୁଳିବ । ମୂଳରୁ ଏହାକୁ ଦୂର କରିବାକୁ ହେବ । ସେଥିପାଇଁ ଖଳଲୋକଙ୍କ କଥାରେ ସେ ରାଜି ହୋଇଗଲେ ।

ସୂର୍ଯ୍ୟନାରାୟଣଙ୍କର ପୁଅ ଆସିଲା ସମସ୍ତଙ୍କର ଆଖି ତା ଉପରେ । ସମସ୍ତଙ୍କ ମନରେ ଉକ୍ରଣ୍ଠା । କିନ୍ତୁ ସୂର୍ଯ୍ୟନାରାୟଣ ଓ ତାଙ୍କ ସ୍ତ୍ରୀ ଶାନ୍ତ । ଚିନ୍ତା ଚଞ୍ଚଳଶୂନ୍ୟ ।

ପିଲାଟି ରଥକୁ ଠେଲିଲା । ଆଶ୍ଚର୍ଯ୍ୟ । ରଥଟି ଗଡ଼ି ଗଡ଼ି ଚାଲିଲା । ଚାରିଆଡ଼େ ହରିବୋଲ ଆଉ ହୁଳହୁଳି । କାନଅତଡ଼ା ପଡ଼ୁଥାଏ । ପ୍ରଜାମାନେ ସୂର୍ଯ୍ୟନାରାୟଣଙ୍କର ଜୟ ଜୟ ଧ୍ୱନି କଲେ । ପୁଅ ଯେ ସୂର୍ଯ୍ୟନାରାୟଣଙ୍କର ସେଥିରେ କାହାର ଆଉ ସନ୍ଦେହ ରହିଲା ନାହିଁ ।



# ରାଜଝିଅ ଓ ସିନ୍ଦୁକ

ଜଣେ ରାଜା ଥିଲେ । ସେ ଘୋର ଗୁରୁଭକ୍ତ । ଗୁରୁଙ୍କଠାରେ ତାଙ୍କର ଅଗାଧ ବିଶ୍ୱାସ । ଗୁରୁ ଯାହା କହନ୍ତି, ତାକୁ ସେ ଟଳେ ପକାନ୍ତି ନାହିଁ ।

ରାଜାଙ୍କର ଝିଅଟିଏ ଥିଲା । ସେ ପରମାସୁନ୍ଦରୀ । ଯେ ଦେଖେ, ଆଖି ତାର ତାଠାରେ ଲାଖିରହେ । ତାର ବିବାହ ବୟସ ହୋଇଗଲା । ରାଜା ତାର ବିବାହ ନେଇ ଗୁରୁଙ୍କର ପରାମର୍ଶ ଲୋଡ଼ିଲେ ।

ଜେମାଙ୍କର ରୂପରେ ଗୁରୁ ମୁଗ୍ଧ । ତାକୁ ନିଜର ସ୍ତ୍ରୀ କରିବାକୁ ସେ ବ୍ୟାକୁଳ । ତାଙ୍କର ମନକଥା ସେ ମନରେ ରଖିଲେ । କିନ୍ତୁ ରାଜାଙ୍କୁ ସେ କହିଲେ—"ବାବା, ଆପଣଙ୍କର ଝିଅ ଦୋଷଯୁକ୍ତ । ତାକୁ ବିବାହ ଦେଲେ ଏ ଦେଶ ଧ୍ୱଂସ ହୋଇଯିବ । ତାକୁ ଅଧିକ ଦିନ ଉଆସରେ ରଖିଲେ ଆପଣଙ୍କୁ ବି ବିପଦ ପଡ଼ିପାରେ ।"

ଗୁରୁଙ୍କ କଥା ଶୁଣି ରାଜା ଶୁମ୍ଭନିଆ । ସେ ବ୍ୟସ୍ତ ହୋଇ-ପଡ଼ିଲେ । ଏ ବିପଦରୁ ଉଦ୍ଧାର ପାଇବାକୁ ବାଟ ଦେଖାଇବା ପାଇଁ ଗୁରୁଙ୍କୁ ନିବେଦନ କଲେ ।

ଗୁରୁ କହିଲେ—"ଉପାୟ ଅଛି, କିନ୍ତୁ ଯେତେହେଲେ ବି ସେ ଆପଣଙ୍କର ଅଳିଅଳି ଝିଅ । ଆପଣ କ'ଣ ଆଜ ତାକୁ ବିଦା କରି ପାରିବେ ?"

ରାଜା ଟିକିଏ ଚିନ୍ତାକଲେ । ଦେଶ ଓ ପ୍ରଜାଙ୍କୁ ଭଲରେ ରଖିବା ରାଜାର କର୍ତ୍ତବ୍ୟ । କର୍ତ୍ତବ୍ୟ ଆଗରେ ଭାଇ, ବନ୍ଧୁ, ପୁଅ, ଝିଅ କାହାରି ସ୍ଥାନ ନାହିଁ । ତେଣୁ ଝିଅକୁ ବନ୍ଦୀ କରିଦେବାକୁ ସେ ମନେ ମନେ ସ୍ଥିର କଲେ । ତା'ପରେ ପାରିବେ ବୋଲି ଗୁରୁଙ୍କୁ କହିଲେ ।

ଗୁରୁ କହିଲେ—"ବାବା ! ତମର ଝିଅ ଅପୂର୍ବ ସୁନ୍ଦରୀ । ତାକୁ ଯେମିତି ଛାଡ଼ିଦେଲେ, ସେ ରାଜସିଂହାସନର ବଦନାମ କରିବ । ତେଣୁ ତାକୁ ଏପରି ଭାବରେ ବନ୍ଦୀକରି ଦିଆଯିବ, ଯେପରି ଏକଥା କେହି ଜାଣିପାରିବେ ନାହିଁ ।"

ରାଜା ପଚାରିଲେ "ଏହା କଣ ସମ୍ଭବପର ?" ଗୁରୁ କହିଲେ—"ହଁ, ସେ ଦାୟିତ୍ୱ ମୋର । ଆପଣ ଗୋଟିଏ ବଢେଇ ଆଣି ସିନ୍ଦୁକଟିଏ ଗଢ଼ାନ୍ତୁ । ତା'ହା ଏପରି ବଡ଼ ହେବ, ଯେମିତି ଜଣେ ତା ଭିତରେ ସୁବିଧାରେ ମାସ ମାସ ଧରି ରହିପାରିବ । ତା' ଛଡ଼ା ଏହାର ତଳପଟ ଓ ଦୁଇପାଖ ଏକବାରେ ନିବୁଜ ହେବ । ପାଣିଟିକିଏ ବି ଏଥିରେ ଯେମିତି ପଶିପାରିବ ନାହିଁ ।"

ରାଜା ଡେରି କଲେ ନାହିଁ । ହାଥେ ହାଥେ ବଢେଇ ଡକା ହେଲା । ଗୁରୁଙ୍କ କହିବା ଅନୁଯାଇ ସିନ୍ଦୁକଟି ତିଆରି ହେଲା । ତା'ପରେ ଗୁରୁ ଗୋଟିଏ ଦିନ ଧାର୍ଯ୍ୟ କରିଦେଲେ । ସ୍ଥିର ହେଲା— ସିନ୍ଦୁକଟିରେ ମାସକପାଇଁ ଖାଦ୍ୟ ମହଜୁଦ ରଖାଯିବ । ସେଇଦିନ ସିନ୍ଦୁକଟିକୁ ନଈରେ ଭସାଇ ଦିଆଯିବ । ରାଜା ଗୁରୁଙ୍କ କହିଲେ "ଦୁର୍ଭାଗ୍ୟଚକ୍ରରୁ ଝିଅ ମୋର ବନ୍ଦୀହୋଇ ଯାଉଛି, ସେ ଯିବା

ପୂର୍ବରୁ ଆପଣ ତାକୁ ଟିକଏ ଆଶୀର୍ବାଦ କରିବେ ।" ଗୁରୁ ସେଥିରେ ରାଜି ହୋଇଗଲେ ।

ଗୁରୁ ଜଣେ ସନ୍ନ୍ୟାସୀ । ଯେଉଁ ନଈରେ ସିନ୍ଦୂକଟି ଭସା-ହେବାର ସ୍ଥିରହେଲା ତାର କୂଳରେ ଗୁରୁଙ୍କର ଆଶ୍ରମ । ସେଠାରେ ତାଙ୍କର ବହୁତ ଶିଷ୍ୟ ରହନ୍ତି । କିନ୍ତୁ ଆଶ୍ରମଟି ଦୂରରେ । ରାଜ୍ୟର ବାହାରେ ।

ସିନ୍ଦୂକ ଭସାହେବା କଥା ସ୍ଥିର ହେବା ପରେ ଗୁରୁ ଗୋଟିଏ ବାହାନାରେ ରାଜାଙ୍କଠାରୁ ବିଦାୟ ନେଲେ । ସେଠୁ ସିଧା ସେ ତାଙ୍କ ଆଶ୍ରମକୁ ଗଲେ । ସେଠି ଶିଷ୍ୟମାନଙ୍କୁ ଡାକି କହିଲେ "ଆମ ଆଶ୍ରମକୁ ବିପଦ ପଡିବାର ସମ୍ଭାବନା ଅଛି । ତେଣୁ ଆମକୁ ନାମ ସଂକୀର୍ତ୍ତନ କରିବାକୁ ହେବ ।"

ସିନ୍ଦୂକଟି ଯେଉଁଦିନ ଭସେଇ ଦେବାର ସ୍ଥିର ହୋଇଥିଲା, ସେଇଦିନୁ ନାମ ସଂକୀର୍ତ୍ତନ ଆରମ୍ଭ ହେବ ବୋଲି ଗୁରୁ ସ୍ଥିର କରିଦେଲେ । ତା'ପରେ କହିଲେ, "ଆଶ୍ରମରେ ତ ସଂକୀର୍ତ୍ତନ ଚାଲିବ ! କିନ୍ତୁ ନଦୀକୁ ଲକ୍ଷ୍ୟ କରିବାକୁ ପଡ଼ିବ । ଯଦି ସିନ୍ଦୂକଟିଏ ଭାସି ଭାସି ଆସେ ତାକୁ ଯତ୍ନରେ ଆଣି ଆଶ୍ରମରେ ରଖିବ । ମୁଁ ପହଞ୍ଚିଲେ ତାର ବ୍ୟବସ୍ଥା କରିବି । କିନ୍ତୁ ସିନ୍ଦୂକଟି କେହି ଖୋଲିବ ନାହିଁ ।"

ଶିଷ୍ୟମାନଙ୍କୁ ଉପଦେଶ ଦେବା ପରଦିନ ଗୁରୁ ପୁଣି ରାଜାଙ୍କ ନିକଟକୁ ଗଲେ । ଆଗରୁ ଯେପରି ସ୍ଥିର ହୋଇଥିଲା, ସେପରି କଲେ । ରାଜା ଓ ଗୁରୁଙ୍କ ଗହଣରେ ଝିଅଟି ସିନ୍ଦୂକ ପାଖକୁ ଆସିଲା । ଗୁରୁ ତାକୁ ଆଶୀର୍ବାଦ କଲେ । ତା'ପରେ ଝିଅଟିକୁ ସିନ୍ଦୂକରେ ବନ୍ଦକରି ନଈରେ ଭସାଇ ଦିଆଗଲା ।

ଏତେ ବଡ ସିନ୍ଦୂକଟି ନଈରେ ଭସି ଭସି ଯାଉଥାଏ । ଯେ ଦେଖେ, ସେ ଆଶ୍ଚର୍ଯ୍ୟ ହୁଏ । କିନ୍ତୁ ସିନ୍ଦୂକଟି ଅଟକାଇବା ପାଇଁ କେହି ସାହାସ କରୁ ନ ଥାନ୍ତି । ସେ ନଈଟି ଆଉ ଗୋଟିଏ ରାଜ୍ୟ ଭିତରେ ବହିଯାଇଛି । ଭାଗ୍ୟକୁ ସେଦିନ ସେ ଦେଶର ରାଜା ନଈକୂଳକୁ ବିଜେ କରିଥିଲେ । ନଈରେ ଏତେବଡ଼ ସିନ୍ଦୂକ ଭସି ଯାଉଥିବାର ଦେଖି ତାଙ୍କର କୌତୁହଳ ହେଲା । ସେ ସିନ୍ଦୂକଟିକୁ ନଈରୁ କୂଳକୁ ଆଣିବାକୁ ପ୍ରହରୀମାନଙ୍କୁ ଆଦେଶ ଦେଲେ ।

ସିନ୍ଦୂକଟି କୂଳକୁ ଅଣାଗଲା । ରାଜାଙ୍କ ଆଦେଶରେ ତାହା ଖୋଲାହେଲା । ସିନ୍ଦୂକ ଭିତରେ ରାଜକୁମାରୀକୁ ଦେଖି ରାଜା ଆଶ୍ଚର୍ଯ୍ୟ ! ଏହି ଅପୂର୍ବସୁନ୍ଦରୀ ଝିଅଟିକୁ କିଏ କାହିଁକି ଏପରି ଭାବରେ ବନ୍ଦୀ କରିଦେଇଛି, ଜାଣିବାକୁ ରାଜାଙ୍କର ପ୍ରବଳ ଆଗ୍ରହ ହେଲା । ସେ ଝିଅଟିକୁ ବାହାରକୁ ଆସିବାକୁ ଆଦେଶ ଦେଲେ । ଝିଅଟି ପଦାକୁ ଆସିବାରୁ ରାଜା ତାର ଏଇ ଦୟନୀୟ ଅବସ୍ଥା ବିଷୟରେ ଜାଣିବାକୁ ଚାହିଁଲେ ।

ଝିଅଟି କେବଳ ତାର ପରିଚୟ ଦେଲା ନାହିଁ, ବରଂ ସବୁ କଥା ଗୋଟି ଗୋଟି କରି ବର୍ଣ୍ଣନା କଲା ।

ତାଙ୍କ ପଡ଼ୋଶୀ ରାଜା ଯେ ବୋକା, ଏଥିରେ ରାଜାଙ୍କର ସନ୍ଦେହ ରହିଲା ନାହିଁ । ସେ ତାଙ୍କୁ ଅପଦସ୍ଥ କଲାଭଳି ପଦେ କଥା ବି କହିଲେ ନାହିଁ । ବରଂ କହିଲେ, "ତୁ ଯେତେବେଳେ ମୋର ପଡ଼ୋଶୀ ରାଜାର ଝିଅ, ତୁ ମୋର ବି ଝିଅ । ମୋ ଉଆସ ତୋପାଇଁ ଉନ୍ମୁକ୍ତ । ତୁ ଆଜଠାରୁ ଏଠାରେ କେମା ପରି ନିର୍ଭୟରେ ରହ ।"

ଏତକ କହି ରଜା ଝିଅଟିକୁ ଉଆସକୁ ପଠାଇଦେଲେ । ରଜାଙ୍କର ଗୋଟାଏ ଦୁର୍ଦ୍ଦାନ୍ତ ଓ ଭୟଙ୍କର ଘୋଡାମୁହାଁ ମାଙ୍କଡ଼ ଥିଲା । ରଜାଙ୍କ ଆଦେଶରେ ତାକୁ ସିନ୍ଦୁକରେ ପୁରାଇ ସିନ୍ଦୁକଟିକୁ ନଈରେ ଭସାଇଦିଆଗଲା । ସିନ୍ଦୁକଟି ଭାସି ଭାସି ଯାଇ ଗୁରୁଙ୍କ ଆଶ୍ରମ ନିକଟରେ ପହଞ୍ଚିଲା । ଗୁରୁଙ୍କ ଶିଷ୍ୟମାନେ ତ ସିନ୍ଦୁକଟିକୁ ଅପେକ୍ଷା କରିଥିଲେ । ସେମାନେ ତାକୁ ଟାଣି ଆଣି କୂଳରେ ରଖିଲେ ।

ଏଣେ କ'ଣ ହୋଇଛି ନା, ସିନ୍ଦୁକଟି ନଈରେ ଭାସିଯିବା ପରେ ଗୁରୁ ରଜାଙ୍କଠାରୁ ବିଦାୟ ନେଇ ତାଙ୍କ ଆଶ୍ରମକୁ ଚାଲି-ଗଲେ । ସେଠାରେ ସିନ୍ଦୁକଟିକୁ ଶିଷ୍ୟମାନେ ରଖିଥିବାର ଦେଖି ସେ ମହାଆନନ୍ଦ । ତାପରେ ଶିଷ୍ୟମାନଙ୍କୁ ଡ଼ାକି କହିଲେ,...“ଆଜି ଏକ ବିପଦର ଦିନ । ରାତିଯାକ ସଂକୀର୍ତ୍ତନ ହେବା ଦରକାର । ତୁମେମାନେ ଉଇଗଲାରେ ସଂକୀର୍ତ୍ତନ କରିବ । କେହି ଯଦି ଚିତ୍କାର କରେ ଓ ସାହାଯ୍ୟ ଲୋଡ଼େ ସେ କଥାକୁ କାନ ଦେବନାହିଁ । ବରଂ ଏପରି ଜୋରରେ ସଂକୀର୍ତ୍ତନ କରିବ, ଯେପରିକି ସେ ଚିତ୍କାର ତମର ସଂକୀର୍ତ୍ତନ ଧ୍ୱନିରେ ବୁଡ଼ିଯିବ । ଏଇ ସମୟରେ ମୁଁ ସିନ୍ଦୁକ ରଖାଯିବା ଘରେ ରହି ଭଗବାନଙ୍କୁ ଆରାଧନା କରିବି ।”

ଶିଷ୍ୟମାନେ ଗୁରୁଙ୍କ କଥା ଶୁଣି ସଂକୀର୍ତ୍ତନ କରିବାକୁ ଚାଲିଗଲେ । ଗୁରୁ ସିନ୍ଦୁକଟିକୁ ଟାଣି ଟାଣି ଗୋଟିଏ କୋଠରୀକୁ ନେଇଗଲେ । ତାର ଝରକା ଓ କବାଟସବୁ ଭିତରପଟୁ ଭଲକରି ବନ୍ଦ କରିଦେଲେ । ତାପରେ ଯାଇ ତରତର ହୋଇ ସିନ୍ଦୁକର ଘୋଡଣୀ ଖୋଲିଦେଲେ ।

ରଜାଝିଅ ସିନ୍ଦୁକରୁ ବାହାରି ଆସିଲେ ତାକୁ କ'ଣ କହିବେ, ସେଇକଥାରେ ଗୁରୁ ଚିନ୍ତାମଗ୍ନ । ହଠାତ୍ ତାଙ୍କର ଭାବନା ଶେଷ

ହୋଇଗଲା । ସିନ୍ଦୂକରୁ ରଜାଜିଅ ପରିବର୍ତ୍ତେ ବାହାରିଆସିଲା ଏକ ଭୟଙ୍କର ମାଙ୍କଡ଼ । ଆଖି ପିଛୁଳାକେ ସେ ସିନ୍ଦୂକରୁ ଡେଇଁପଡି ଗୁରୁଙ୍କୁ ଆକ୍ରମଣ କଲା । ଗୁରୁ ଜୋରରେ ଚିତ୍କାର କଲେ; କିନ୍ତୁ ତାଙ୍କର ଚିତ୍କାର ଯେତିକ ଯୋରରେ ହେଲା ତାକୁ ବୁଡ଼ାଇ ଦେବାପାଇଁ ସଂକୀର୍ତ୍ତନର ଧ୍ୱନି ସେତିକ ଜୋରରେ ଉଠିଲା । ଶିଷ୍ୟ-ମାନେ ସଂକୀର୍ତ୍ତନରେ ଭୋଳ ହୁଅନ୍ତୁ ନା ନାହିଁ; କିନ୍ତୁ ଗୁରୁଙ୍କର ଆଦେଶଥିବାରୁ କେହି ଗୁରୁଙ୍କର ଚିତ୍କାରକୁ କାନ ଦେଲେନାହିଁ । ମାଙ୍କଡଟି ଗୁରୁଙ୍କୁ କାମୁଡ଼ ବିଦାରି ମାରିପକାଇଲା ।

ରାତି ପାହିଲା । ସକାଳହେଲାପରେ ଗୁରୁ ସେଦିନ ନିତ୍ୟକର୍ମ କରିବାକୁ ପଦାକୁ ଆସିଲେ ନାହିଁ । ଏ ବ୍ୟତିକ୍ରମରେ ଶିଷ୍ୟମାନେ ବ୍ୟସ୍ତ । ତେଣୁ ସେମାନେ ଏକଜୁଟ ହୋଇ ଗୁରୁ ରହୁଥିବା ଘର ପାଖକୁ ଗଲେ । ଝରକା କବାଟ ସବୁ ବନ୍ଦଥିବାରୁ ତାଙ୍କର ସନ୍ଦେହ ହେଲା । କବାଟରେ କାନଦେଲେ । କିଛି ଶବ୍ଦ ବି ନଥିଲା । ଶିଷ୍ୟମାନେ ଶେଷରେ ଗୁରୁଙ୍କୁ ଡାକଲେ । ଉତ୍ତର ତ ଦୂରରକଥା, କିଛି ସ୍ୱରଶବ୍ଦ ବି ଶୁଣାଗଲା ନାହିଁ । ଶେଷରେ ଶିଷ୍ୟମାନେ କବାଟ ଭାଙ୍ଗି ଘରେ ପଶିଲେ । ଏତିକବେଳେ ମାଙ୍କଡ଼ଟି ହୁଆଁ ମାରି ଘରୁ ବାହାରି ଚାଲିଗଲା । ଘର କଣରେ ଛିନ୍ନଭିନ୍ନ ହୋଇ ଗୁରୁ ମରି ପଡିଥିଲେ ।

ବିଶ୍ୱାସରେ ବିଷଦେଲେ ବିଷମୟ ଫଳ ଫଳେ । ସେଥିପାଇଁ ଲୋକେ କହନ୍ତି —

"ରଜାଜିଅ ପଲଙ୍କରେ ଶୁଏ
ବୈରାଗୀକୁ ମାଙ୍କଡ଼ ଖାଏ ।"

# ଛଳନା କର ନାହିଁ ବିପଦ ବହୁତ

ବାବା ଘାସିରାମ ପ୍ରସିଦ୍ଧ ସନ୍ଥ । ଥରେ ସେ ତୀର୍ଥକୁ ବାହାରିଲେ । ତାଙ୍କର ଗୋଟିଏ ବାଳକ ଚାକର ଥାଏ । ତାକୁ ସେ ସାଥିରେ ନେବାକୁ ଚାହିଁଲେ ।

ବାଳକଟି ଯାଇ ସନ୍ଥଙ୍କର ଇଚ୍ଛାକଥା ତା ସ୍ତ୍ରୀକୁ କହିଲା । ସ୍ତ୍ରୀ ଭାବିଲା ବେଳ ପଡ଼ିଛି, ବାବାଜିଙ୍କଠାରୁ ଦି' ପଇସା ଝଡ଼ାଇ ହେବ । ତେଣୁ ସେ କହିଲା "ତୁମେ ବାବାଙ୍କୁ କୁହ, ଆମର ଏଠି ସାଆନ୍ତ ବହୁତ ! ତାଙ୍କର ସେବାକରି ଆମକୁ ବହୁତ ପଇସା ମିଳେ । ବାବାଙ୍କ ସାଥିରେ ଗଲେ ଆମର ରୋଜଗାର କମିଯିବ !"

ବାଳକଟି ଯାଇ ଏକଥା ସନ୍ଥଙ୍କୁ କହିଲା । ସନ୍ଥ କହିଲେ- "ଚିନ୍ତା କର ନାହିଁ । ତୋର ଏଠି ଯାହା ରୋଜଗାର ହେଉଥିଲା, ଆମେ ତାହା ଦେଇଦେବା ।"

ବାଳକଟି ସେଠୁ କହିଲା- "ଆପଣଙ୍କ ପାଖରେ ଯଦିଓ ମୁଁ ଚଳୁଛି, ଆପଣ ମୋର ପ୍ରକୃତି ଜାଣି ନାହାନ୍ତି । ଯାହା ମୁଁ ଦେଖେ, ସେ ବିଷୟରେ ମୋର ଜାଣିବାର କୌତୁହଳ ହୁଏ । ସେ ସବୁକଥା ନ ଜାଣିଲା ପର୍ଯ୍ୟନ୍ତ ସେଠୁ ମୁଁ ଟଳେ ନାହିଁ । ବାଟରେ ଆପଣଙ୍କୁ ମୁଁ ଯେଉଁଠି ଯାହା ପଚାରିବି, ସେସବୁର ଉତ୍ତର ଆପଣ ଦେବେ । ଯେଉଁଠି ମୋ ମନବୋଧିଆ ଉତ୍ତର ପାଇପାରିବି ନାହିଁ, ସେଇଠୁ ମୁଁ ଫେରି ଆସିବି ।"

ସେଥିରେ ସନ୍ଥ ବି ରାଜି ହେଲେ । ତା'ପରେ ତୀର୍ଥକୁ ଯିବାର ଦିନ ଧାର୍ଯ୍ୟ ହେଲା ।

ନିର୍ଦ୍ଧାରିତ ଦିନ ସନ୍ଥ ବାଳକ ସାଥିରେ ତୀର୍ଥକୁ ବାହାରି ପଡ଼ିଲେ । ବାଟରେ ସନ୍ଥ ଯେଉଁଠି ଅଟକାନ୍ତି, ବାଳକଟି ବଜାରକୁ ଯାଏ, ସଉଦା ଆଣେ, ରନ୍ଧାବଢ଼ା କରି ସନ୍ଥଙ୍କୁ ଖୁଆଏ । ଉଭୟେ ବିଶ୍ରାମ ନିଅନ୍ତି । ତାପରେ ପୁଣି ବାହାରନ୍ତି ।

ଯାଉ ଯାଉ ସେମାନେ ଗୋଟିଏ ସହରରେ ପହଞ୍ଚିଲେ । ସେଠାରେ ଗୋଟିଏ ପାନ୍ଥଶାଳାରେ ସନ୍ଥ ବିଶ୍ରାମ ନେଲେ । ବାଳକଟି ସଉଦାପାଇଁ ବଜାର ଗଲା । ସେଠି ସେ ଦେଖିଲା—ଜଣେ ଡାକବାଲା ଦୌଡୁଛି । ସାଥିରେ ତାର ଚପରାଶିଟିଏ । ବାଟଯାକ ଡାକବାଲା କହୁଛି—"ଶୀଘ୍ର ଆ, ଶୀଘ୍ର ଆ ।" ଉଭୟେ ଉଲ୍ଲଙ୍ଗ । ଏକମୁହାଁ ହୋଇ ଧାଉଁଥାଆନ୍ତି ।

ବାଳକଟିକୁ ଏ ଦୃଶ୍ୟ ଅପୂର୍ବ ଓ ଅଭିନବ ଲାଗିଲା । ସେ ଏ ବିଷୟରେ ଯାହାକୁ ପଚାରିଲା, କେହି କିଛି କହିପାରିଲେ ନାହିଁ । ମନକଷ୍ଟରେ ବାଳକଟି ସଉଦା କଲା । ସେତକ ଧରି ସେ ଫେରିଲା ସତ, କିନ୍ତୁ ମନ ତାର ଭାରାକ୍ରାନ୍ତ । ଚଟାପଟ ରନ୍ଧାବଢ଼ା ସାରି ସନ୍ଥଙ୍କୁ ସେ ଖାଇବାକୁ ଦେଲା । ସନ୍ଥ ଖାଇସାରିବା ମାତ୍ରେ ସେ ଯାହା ଦେଖିଥିଲା ତାକୁ ତାଙ୍କ ଆଗରେ ବଖାଣିଲା । ତା'ପରେ କହିଲା — "ଏହାର କାରଣ ମତେ ଶୀଘ୍ର କହନ୍ତୁ । ନହେଲେ ମୁଁ ଏଇନେ ଘରକୁ ଫେରିଯିବି ।"

ସନ୍ଥ କହିଲେ "ବାଟ ଚାଲି ଚାଲି ମୁଁ ହାଲିଆ । ଏଇନେ ଦି'ଟା ଖାଇଛି । ଟିକିଏ ବିଶ୍ରାମ ନେଇସାରିବା ପରେ ତୋ ପ୍ରଶ୍ନର ଉତ୍ତର ଦେବି ।"

ବାଳକର ତ ମନ ଲାଗିଛି । ସନ୍ଥ ବିଶ୍ରାମ ନେଉଥିଲାବେଳେ ସେ ତାଙ୍କର ଗୋଡ଼ ମୋଡ଼ିବାକୁ ବସିପଡ଼ିଲା । ସନ୍ଥ ଟିକିଏ ଆରାମ

କଣସାରିବା ପରେ ଉଠିଲେ । ତାପରେ ଆରମ୍ଭ କଲେ—"ଏଠାରେ ଜଣେ ବଣିକର ଘର । ତାର ସ୍ତ୍ରୀ ଦେଖିବାକୁ ଅପୂର୍ବ ସୁନ୍ଦରୀ । ତାଭଳି ସୁନ୍ଦରୀ ସ୍ତ୍ରୀ ଏଇ ସହରରେ ଦେଖିବାକୁ ମିଳେନାହିଁ । ବଣିକଟି ବିଦେଶ କରେ । ଘରେ ତା ସ୍ତ୍ରୀ ଏକୁଟିଆ ରହେ । ସ୍ତ୍ରୀ ଲୋକଟି ଖୁବ୍ ଭଲ । ଚରିତ୍ର ଉତ୍ତମ । ଶ୍ରଦ୍ଧା, ସ୍ନେହ ତା'ଠାରେ ପୂରି ରହିଛି । ସେ ତାର ବନ୍ଧୁ ବାନ୍ଧବ ପାଖପଡିଶା ଲୋକଙ୍କର ଖବର ଅନ୍ତର ବୁଝେ । ଥରେ ସେ ଜଣେ ବନ୍ଧୁ ଘରକୁ ଯାଇଥିଲା । ବାଟରେ ପ୍ରବଳ ତୋଫାନ ଆରମ୍ଭ ହୋଇଗଲା । ସ୍ତ୍ରୀଲୋକଟି ତ ଏକୁଟିଆ । ସେ ଆଉ ଆଗକୁ ଆଗେଇବାକୁ ସାହାସ କଲା ନାହିଁ । ପାଖରେ ଘରଟିଏ ଦେଖି ତା ଭିତରକୁ ପଶିଗଲା । ଋତୁଲା-ପାଗ ଭଲ ହେବା ପର୍ଯ୍ୟନ୍ତ ସେଠି ସେ ଅଟକି ଯିବ ।

ସେ ଘରଟି ଜନଶୂନ୍ୟ । କେହି କୁଆଡେ଼ ନଥିଲେ । ତେଣୁ ସେ କଷ୍ଟସମସ୍ତ ସେଠି ବେଶ୍ ଖୁସିରେ କଟାଇଦେଲା । ତାପରେ ସେ ଦେଖିଲା, ଘର ଭିତରୁ ଗୋଟିଏ ମୁସଲମାନ ଯୁବକ ବାହାରି ଆସୁଛି । ଘରଟି ଯେ ଜଣେ ମୁସଲମାନର, ସେଥିରେ ତାର ଆଉ ସନ୍ଦେହ ରହିଲା ନାହିଁ । ତାକୁ ଭାରି ଡ଼ରମାଡ଼ିଲା । ସେ ଆଉ ତୋଫାନକୁ ମାନିଲା ନାହିଁ । ଘରୁ ବାହାରିପଡି ରାସ୍ତାରେ ସେ ଦୌଡିବାକୁ ଲାଗିଲା ।

ସ୍ତ୍ରୀଲୋକଟିକୁ ମୁସଲମାନ ଯୁବକଟି ଦେଖିଦେଲା । ଏପରି ସୁନ୍ଦରୀ ସ୍ତ୍ରୀକୁ ଆଗରୁ ସେ କେବେ ଦେଖି ନ ଥିଲା । ତାକୁ ଦେଖି ଯୁବକଟି ଭୋଳ । ନିଜକଥା ଭୁଲିଗଲା । ତାକୁ ଧରିଆଣି ଘରେ ରଖିବା କଥାଟା ମୁଣ୍ଡ ଭିତରେ ତାର ପଶିଗଲା । ସେ ଆଉ ଅପେକ୍ଷା କଲା ନାହିଁ । ସେଇ ଝଡ଼ ଭିତରେ ସେ ବି ସ୍ତ୍ରୀଲୋକଟିର

ସନ୍ଧାନ ପାଇଁ ରାସ୍ତାରେ ଦୌଡ଼ିଲା । ରାସ୍ତାରେ ତ କେହି ନଥିଲେ । ତେଣୁ ସ୍ତ୍ରୀଲୋକଟି କେଉଁ ଆଡ଼କୁ ଗଲା, ସେ କଥା ସେ କାହାରିକୁ ପଚାରି ବୁଝିପାରିଲା ନାହିଁ । ସେ ସହର ଆଡ଼କୁ ଯାଇଥିବା ରାସ୍ତାରେ ଦୌଡ଼ିଲା । ଶେଷକୁ ସେ ସହରରେ ଆସି ପହଞ୍ଚିଲା । ମୁସଲମାନଟି ତ ସ୍ତ୍ରୀଲୋକ ପାଇଁ ପାଗଳ । ସେ ସହରରେ ସ୍ତ୍ରୀଲୋକଟିର ଖୋଜ ନେଲା । ଯାହାହେଉ, ତାର ଉଦ୍ଦେଶ୍ୟ ସଫଳ ହେଲା । ସେ ଖବର ପାଇଲା ଯେ, ସେ ହେଉଛି ଜଣେ ବଣିକର ସ୍ତ୍ରୀ । ସ୍ୱାମୀ ତାର ବିଦେଶରେ । ସ୍ତ୍ରୀଲୋକଟି ଘରେ ଏକୁଟିଆ ରହେ ।

ସ୍ତ୍ରୀଲୋକଟିକୁ ଆପଣାର କରିବାକୁ ମୁସଲମାନ ଯୁବକଟି ଉଠିଲା । ସେ ବହୁତ ପ୍ରକାର ଫନ୍ଦା ଫାନ୍ଦିଲା । କିନ୍ତୁ ସେସବୁ କାର୍ଯ୍ୟକାରୀ କରିବାଟା ସମ୍ଭବପର ହେଲା ନାହିଁ । ଯୁବକଟି ଏ ବିଷୟରେ ଏତେ ଚିନ୍ତିତ ଯେ, ତାର ଖାଇବା ପିଇବା ବି ସେ ଭୁଲିଗଲା ।

ଯୁବକଟି ସେଇ ସହରର ପାନ୍ଥଶାଳାରେ ରହିଲା । ସେଠାରେ ଥିବା ଚାକରଟି ମାଇଚିଆ । ତାକୁ ସେ ପଇସାପତ୍ର ଦେଇ ହାତ କରି ନେଲା । ମାଇଚିଆଟି ଏବେ ମୁସଲମାନର କଥା ଖୁବ୍ ମାନେ । ତା'କଥା ତଳେ ପକାଏ ନାହିଁ । ମୁସଲମାନଟି ତାକୁ ବେଳେ ବେଳେ ସ୍ତ୍ରୀ ବେଶ କରାଏ । ସାଥିରେ ବୁଲେଇ ନିଏ । ସେ ଦେଖେ ଲୋକେ ତାକୁ ସ୍ତ୍ରୀ ବୋଲି ଭାବନ୍ତି । ସେ ଯେ ମାଇଚିଆ ଏକଥା କେହି ସନ୍ଦେହ କରନ୍ତି ନାହିଁ ।

ଦିନେ ମୁସଲମାନଟି ମାଇଚିଆକୁ ସ୍ତ୍ରୀ ବେଶ କରାଇଲା । ତାକୁ ଗୋଟିଏ ସବାରିରେ ବସାଇ ରାଜ ଦରବାରରେ ନେଇ ହାଜର । ଆଗରୁ ସେ ଜଣେ କର୍ମଚାରୀଙ୍କ ହାତ କରି ନେଇଥାଏ ।

ତାର ମାର୍ଫତରେ ରାଜାଙ୍କ ଆଗରେ ସେ ଅର୍ଜି ପେଶ୍ କରାଇଲା । ଅର୍ଜିର ସାରାଂଶ ହେଉଛି "ସେ ସ୍ୱାମୀସ୍ୱ ବଣିକର ସ୍ତ୍ରୀ । ବଣିକ ସବୁବେଳେ ବିଦେଶରେ । ତାର ତତ୍ତ୍ୱ ସେ ନିଏ ନାହିଁ । ଏକୁଟିଆ ରହି ତାର ଜୀବନ ଦୁର୍ବିସହ ହୋଇଉଠୁଛି । ଏପରି ଅବସ୍ଥାରେ ସେ ରହିଲେ ପାଗଳ ହୋଇଯିବ । ତେଣୁ ତାର ପ୍ରାର୍ଥନା— "ମହାରାଜ ଗୋଟିଏ ଅସହାୟ ନାରୀ ପ୍ରତି ଦୟାପରବଶ ହୋଇ ତା ପାର୍ଶ୍ୱରେ ଆସିଥିବା ମୁସଲମାନ ଯୁବକ ସହିତ ବିବାହ କରିବାକୁ ତାକୁ ଅନୁମତି ଦିଅନ୍ତୁ ।"

ଏପରି ଅର୍ଜି ସମ୍ପୂର୍ଣ୍ଣ ଭାବରେ ନୂତନ । ଜଣେ ନାରୀର ରାଜଦ୍ୱାରରେ ଏପରି ପ୍ରାର୍ଥନା ଅତ୍ୟନ୍ତ ଲଜ୍ଜାକର କଥା । ତା'ଛଡ଼ା ନାରୀଟି ହିନ୍ଦୁ । ମୁସଲମାନ ସାଥିରେ ବିବାହ ପାଇଁ ଅନୁମତି ଦେଲେ ହିନ୍ଦୁ ପ୍ରଜାମାନେ ବିରକ୍ତ ହେବେ । ବିକ୍ଷୋଭ ଓ ବିଦ୍ରୋହ ବି ଅସମ୍ଭବ ନୁହେଁ । ପ୍ରକୃତ କଥା ନଜାଣି ରାଜା ଅନୁମତି ଦେବା କି ନଦେବା ଉଚିତ ମନେକଲେ ନାହିଁ । ଅନ୍ୟ ଏକ ଦିନକୁ ଅର୍ଜିକୁ ମୁଲତବି ରଖିଲେ । ଏକଥା ଶୁଣି ମୁସଲମାନଟି ରାଜାଙ୍କୁ ବହୁତ ଅନୁନୟ କରି ନିବେଦନ କଲା । ଶେଷକୁ ଧମକ ଦେଇ କହିଲା - 'ସ୍ତ୍ରୀ' ଲୋକଟି ସବାରିରେ ବସି କହୁଛି, ଅନୁମତି ନଦେଲେ ସେ ଏଠୁ ଯିବ ନାହିଁ । ଆମରଣ ଅନଶନ କରିବ ।"

ରାଜା ସବୁ ଶୁଣି ଶେଷକୁ କହିଲେ "ମୁଲତବି ତାରିଖ କାଲିକୁ ଧାର୍ଯ୍ୟ ହେଲା । ତାକୁ କୁହ କାଲିକୁ ସେ ଆସୁ ।"

ପରଦିନ ଛଦ୍ମବେଶୀ ସ୍ତ୍ରୀଲୋକ ଠିକ ସମୟରେ ରାଜ ଦରବାରରେ ହାଜର ହେଲା । ରାଜା କିନ୍ତୁ ଅନ୍ୟ ଏକ କାମରେ

ବାହାରିଗଲେ । ପରଦିନଠାରୁ ଆପେ ଆପେ ଦରଖାସ୍ତଟି ମୁଲତବି ହୋଇଗଲା ।

ଏ ଖବରଟି ଅତ୍ୟନ୍ତ ଅଦ୍ଭୁତ । ତେଣୁ ତାହା ଆଉ ରାଜ-ଦରବାର ବା ରାଜକର୍ମଚାରୀଙ୍କ ମଧ୍ୟରେ ଆବଦ୍ଧ ହୋଇ ରହିଲା ନାହିଁ । ସାରାସହରରେ ଚହଲ ପଡିଗଲା । ବଣିକର ସ୍ତ୍ରୀର କାନକୁ ଏକଥା ଗଲା । ତାହା ଶୁଣି ସେ ଗ୍ଲାନଆ । ଡାକବାଲା ସହିତ ତାର ପରିଚୟ ଥିଲା ସେ ଯାଇ ତାକୁ ଏକଥା କହି ପରାମର୍ଶ ଲୋଡିଲା । ଡାକବାଲା ଆଉ ଅପେକ୍ଷା କଲାନାହିଁ । ସାଥିରେ ତାର ଚପରାଶିକୁ ଧରି ବିଦେଶକୁ ବାହାରି ପଡ଼ିଲା । ସେମାନେ ଯାଉଥିବାର ଦୃଶ୍ୟ ତୁ ଦେଖି ଆସିଲୁ ।”

ତା’ପରେ ସନ୍ଥ ଚୁପ୍ ହୋଇଗଲେ । ବାଳକଟି ପଚାରିଲା— “ବାବା ! ଏହାପରେ କ’ଣ ହେବ ।”

ସନ୍ଥ କହିଲେ, “ତା’ପର—ଘଟଣା କ’ଣ ହେବ ଶୁଣ । ଡାକବାଲା ଓ ଚପରାଶି ବଣିକକୁ ଖବର ଦେଇଦେବେ । ସେ ସିଧା ରାଜଦରବାରକୁ ଚାଲିଆସିବ । ଏଣେ ଛଦ୍ମବେଶୀ ସ୍ତ୍ରୀଲୋକଟି ସହିତ ମୁସଲମାନ ରାଜଦରବାରରେ ପହଞ୍ଚିବ । ରାଜା ଏ କଥାର ନିଷ୍ପତ୍ତି ନ ଶୁଣାଇବାରୁ ଦରଖାସ୍ତ ଫଏସଲା କରିବାପାଇଁ ମୁସଲମାନଟି ପୁଣି ଜିଦ୍‌ଧରିବ । ଏଡିକବେଳେ ବଣିକଟି କହିବ—“ହଜୁର ! ଯାହାର ସ୍ତ୍ରୀ ମୁସଲମାନ ସାଥିରେ ଯିବାକୁ ଚାହୁଁଛି, ମୁଁ ସେଇ ବଣିକ । ମୋ ସ୍ତ୍ରୀ ଯିବାକୁ ଯଦି ଚାହୁଁଛି, ସେ ଯାଉ । କିନ୍ତୁ ତା ପାଖରେ ମୋର ସମସ୍ତ ଗଚ୍ଛିତ ଧନ ଅଛି । ତାକୁ ସେ ଫେରାଇ ଦେଉ ।”

ଏକଥା ଶୁଣି ରାଜା ଓ ସଭାସଦ୍‌ଗଣ ଭାବିବେ – ବଣିକ ଯାହା କହୁଛି, ତାହା ଏକଦମ୍ ଠିକ୍ । ତେଣୁ ରାଜା ବଣିକର ଛଦ୍ମବେଶୀ ସ୍ତ୍ରୀକୁ ରାଜଦରବାରରେ ଉପସ୍ଥିତ ହେବାକୁ ଆଦେଶ ଦେବେ ।

ଛଦ୍ମବେଶୀ ସ୍ତ୍ରୀଲୋକଟି ପ୍ରଥମେ ସବାରରୁ ଓହ୍ଲାଇବାକୁ ରାଜି ହେବ ନାହିଁ । ଯେତେବେଳେ ରାଜାଦେଶ ହୋଇଛି, ତାର ଉପାୟ ନଥିବ । ସେ ବାଧ ହୋଇ ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହେବ । ତାକୁ ଦେଖି ବଣିକ କହିବ—"ମହାରାଜ ! ଏତ ମୋ ସ୍ତ୍ରୀ ନୁହେଁ । ଆପଣ ଅନୁସନ୍ଧାନ କରି ସତ କଥା ବୁଝନ୍ତୁ ।"

ରାଜା ବଣିକର ପ୍ରାର୍ଥନା ମଞ୍ଜୁର କରିଦେବେ । ଛଦ୍ମବେଶୀ ନାରୀ ଓ ମୁସଲମାନକୁ ଅଟକ ରଖାଯିବ । ଅନୁସନ୍ଧାନ ପରେ ଜଣାପଡ଼ିବ—ଛଦ୍ମବେଶୀ ନାରୀଟି ମାଇଚିଆ । ସେ ପାନ୍ଥଶାଳାର ଚାକର । ମୁସଲମାନ ଯୁବକ ପଇସା ଦେଇ ତାକୁ ହାତ କରିଛି । ତାରି କଥାରେ ପଡି ସେ ମିଛରେ ଦରଖାସ୍ତ କରିଥିଲା ।

ରାଜା ସମସ୍ତ କଥା ଶୁଣି ମୁସଲମାନ ଯୁବକ ଓ ପାନ୍ଥଶାଳାର ଚାକରକୁ ଜୀବନ୍ତ ସମାଧି ଦେବାକୁ ଆଦେଶ ଦେବେ ।

ଏଥର ବଣିକଟି ଆନନ୍ଦ ଓ ଖୁସି ମନରେ ଘରକୁ ତାର ଫେରିଯିବ ।



# କଥା କହି ଜାଣିଲେ ସୁନ୍ଦର

ଦୁଇଟି ବଳୁଆ । ଗୋଟିଏ ମାଈ ଅନ୍ୟଟି ଅଣ୍ଡିରା । ସାଥି ହୋଇ ସେମାନେ ରହନ୍ତି । କେହି କାହା ପାଖ ଛାଡନ୍ତି ନାହିଁ ।

ଥରେ ଅଣ୍ଡିରା ବଳୁଅଟିକୁ ଶୋଷ କଲା । ସେ ଜାଣେ, ପାଖରେ କେଉଁଠି ହେଲେ ପାଣି ନାହିଁ । ଯେଉଁଠି ଅଛି, ସେଠି ଘୋର ବିପଦ । ପାଣି ପାଖରେ ଚିତାବାଘର ବସା । ସେଠାକୁ ଗଲେ ଚିତା ଛାଡିବ ନାହିଁ । ତାକୁ ଜଳଖିଆ କରିଦେବ । ତେଣୁ ତାର ଘୋର ଭୟ । ସେଠାକୁ ଯିବାକୁ ତାର ଛାତି ପତଉ ନଥାଏ । ଏଣେ ତାକୁ ଘୋର ଶୋଷ । ସେ ଆଉ ସମ୍ଭାଳି ପାରିଲା ନାହିଁ । ବାଧ୍ୟ ହୋଇ ମାଈବଳୁଆଟିକୁ ସବୁକଥା କହିଲା ।

ମାଈ ବଳୁଆ କହିଲା "ତତେ ବାଗେଇକରି କଥା କହି ଅସେ କି ନାହିଁ ମୁଁ ଜାଣେ ନାହିଁ । ମୁଁ କିନ୍ତୁ ବାଗେଇକରି କଥା କହିବାରେ ଧୂରନ୍ଧର । ଚାଲ, ଯିବା । ଚିତା ରହୁଥିବା ଜାଗା ପାଖରେ ଝରଣା ଅଛି । ସେଠି ପାଣି ପିଇବା ।"

ଚିତାକୁ ଅଣ୍ଡିରା ବଳୁଆର ଘୋର ଡର । ଶୋଷରେ ଛାତି ଫାଟିଗଲା ଭଳି ଲାଗିଲେ ବି ତାର ଗୋଡ଼ ଆଗକୁ ପଡିଲା ନାହିଁ । କେବଳ ମାଈ ବଳୁଆର ବାଧ୍ୟବାଧକତାରେ ସେ ତା ପଛେ ପଛେ ଚାଲିଲା ।

ସେମାନେ ଝରଣା ପାଖରେ ପହଞ୍ଚିବା ବେଳକୁ ଚିତା ସେଠି ଠିଆ ହୋଇଥିଲା । ତାକୁ ଦେଖି ଅଣ୍ଡିରା ବଳୁଆର ପିଳେହିପାଣି । ସେ ଜମା ଆଉ ଆଗେଇଲା ନାହିଁ । ସେଠି ସ୍ଥାଣୁ ଭଳି ଠିଆହୋଇ

ରହିଲା । କିନ୍ତୁ ମାଈ ବଳୁଆ ନିର୍ଭୟ । ଚିତାକୁ ଦେଖି ସେ ଘାବରା ହେଲା ନାହିଁ । ବରଂ ବେପରୁଆ ଭାବରେ ଅଣ୍ଡିରା ବଳୁଆକୁ କହିଲା—"ଆମର ପରମ ପୂଜନୀୟ ମାମୁଁ ଆଗରେ ଠିଆ ହୋଇ-ଛନ୍ତି । ବୋକାଙ୍କ ଭଳି ଠିଆ ହେଲୁ କ'ଣ ? ଯାଉନୁ, ଝରଣାରେ ଭଲକରି ଧୂଆଧୋଇ ହୋଇ ଆସି ମାମୁଁଙ୍କୁ ସମ୍ମାନ ଦେବୁ !"

ମାଈ ବଳୁଆର କଥା ଶୁଣି ଚିତା ଭାବିଲା—ଯାହାହେଉ, ବଳୁଆକୁ ଧରିବା ପାଇଁ ତାକୁ ପରିଶ୍ରମ କରିବାକୁ ପଡ଼ିବ ନାହିଁ । ସେ ଆପେ ଆପେ ପାଖକୁ ଆସିବ । ସେଥିପାଇଁ ସେ ମନେ ମନେ ଭାରି ଖୁସି । କିନ୍ତୁ ସେମାନଙ୍କୁ ଦେଖିବାପାଇଁ ଗମ୍ଭୀର ହୋଇ ଠିଆ ହୋଇ ରହିଲା ।

ବଳୁଆ ବି ମହାଚାଲାକ । ମାଈ ବଳୁଆର କଥାର ମର୍ମ ସେ ଧରିନେଲା । ସେ ସିଧା ଝରଣା ପାଖକୁ ଗଲା । ଗାଧୋଇବା ବାହାନାରେ ପେଟେ ପାଣି ପିଇଲା । ତାପରେ ଧୀରେ ଧୀରେ ସେଠୁ ଆସି ଚିତାକୁ ସମ୍ମାନଦେଇ ତା ପାଖରେ ଠିଆହେଲା । ଚିତା ତାକୁ ଆକ୍ରମଣ କରିବା ପୂର୍ବରୁ ସେ ମାଈ ବଳୁଆକୁ ଅନାଇ କହିଲା "ଠିଆହୋଇ ହେଲୁ କ'ଣ ? ଗାଧୋଇକରି ଆ । ମାମୁଁଙ୍କୁ ସମ୍ମାନ ଦେ ।" ଏକଥା ଶୁଣି ଚିତା ମନରେ ଆନନ୍ଦ । ସେ ଭାବିଲା, ଦୁଇଟିଯାକ ବଳୁଆ ଆସି ସୁବିଧାରେ ମିଳିଗଲେ । ମାଈବଳୁଆ ଅଣ୍ଡିରା ବଳୁଆର କଥାମାନି ଝରଣାକୁ ଗଲା । ସେଠି ବି ଗାଧୋଇଲା ବେଳେ ପେଟେ ପାଣି ପିଇଲା । ତାପରେ ଚିତା ପାଖକୁ ଆସି ସମ୍ମାନ ଦେଇ ଅଣ୍ଡିରା ବଳୁଆ ପାଖରେ ଠିଆହେଲା ।

ଚିତାଟିର ମନରେ ଦ୍ୱନ୍ଦ । ଆଗରେ ତାର ଦୁଇଟି ବଳୁଆ । କାହାକୁ ଆଗ ଖାଇବ ତାର ନିଷ୍ପତ୍ତି ସେ ନେଇ ପାରୁନଥାଏ ।

ଏତିକବେଳେ ମାଈ ବଲୁଆ କହିଲା—"ମାମୁଁ, ଆପଣଙ୍କୁ, ମନେ ମନେ ମୁଁ ବହୁତ ଖୋଜୁଥିଲି । ମୋର ଆଜ ଭାଗ୍ୟ ଭଲ । ଆପଣଙ୍କ ସାଥିରେ ଦେଖା ହୋଇଗଲା । ଆପଣଙ୍କର ଏ ଯେଉଁ ଭଣଜା, ଏ ଘର କଳିଆ । ୟାଙ୍କ ସାଥିରେ ଚଳିବା ଭାରି କଷ୍ଟ । ଆମର ଦୁଇଟି ପିଲା । ସେମାନେ ବେଶ୍ ମୋଟାମୋଟି । ଗୁଲୁଗୁଲିଆ । ଦେଖିଲେ ମନଖୁସି ହୋଇଯିବ । ସବୁଦିନ ୟାଙ୍କର ମୋର କଳି । ଏ କହନ୍ତି—"ପିଲା ଦୁ'ଟା ତାଙ୍କର । ଏଇଟା କେମିତି ହେବ । ମୁଁ ସେମାନଙ୍କୁ ଜନ୍ମକରିଛି । ପାଳୁଛି ବି । ତେଣୁ ସେମାନେ ମୋର । ସେଥିପାଇଁ ମୁଁ ତାଙ୍କ କଥାରେ ରାଜି ହୁଏ ନାହିଁ । ଆମ ଦୁହିଁଙ୍କର ଝଗଡ଼ାପଗଡ଼ କଳିହୁଏ । କଳି ତୁଟାଇବାକୁ ବହୁତ ଆସନ୍ତି । ଇଏ କାହାରି କଥା ମାନୁନାହାନ୍ତି । ତେଣୁ ମୁଁ ଭାବୁଥିଲି—ମାମୁଁଙ୍କ ସାଥିରେ ଦେଖା ହୁଅନ୍ତା କି ! ଯେତେହେଲେ ମାମୁଁ ଆମ ନିଜର । ସେତ ଖାଲି କଥାଟା ତୁଟାଇବେ ନାହିଁ, ଯେ ନ ମାନିବ, ତାକୁ ଦାନେ ଦେବେ । ଆପଣ ମାମୁଁ ଟିକିଏ ଦୟାକରି ଆସନ୍ତେ ନାହିଁ ? ନାତି ନାତୁଣୀଙ୍କୁ ଦେଖନ୍ତେ । କଥାଟା ବି ତୁଟାଇଦେଇ ଗୁଲିଆସନ୍ତେ ।"

ଏତିକି ଅଣ୍ଡିରା ବଲୁଆ ଆଡ଼କୁ ଅନାଇଲା । ଅଣ୍ଡିରା ବଲୁଆ କହିଲା, "ମାମୁଁ ମୁଁ କ'ଣ ମନା କରୁଛି ! କଥାଟା ତୁଟାଇ ଦିଅନ୍ତୁ । ମୁଁ କ'ଣ ଆପଣଙ୍କ କଥାରୁ ବାହାରିଯିବ ।"

ବାଘ ଯିଏ ଦୁଇଟା ବଲୁଆଙ୍କୁ ଖାଇବ ବୋଲି ଭାବୁଥିଲା, ଏବେ ମାଈ ବଲୁଆ କଥା ଶୁଣି ତା ମନ ବଦଳିଗଲା । ସେ ଭାବିଲା ଏଇନେ ଏ ଦୁଇଟାଙ୍କୁ ଆକ୍ରମଣ କଲେ ପିଲା ଦୁହିଁଙ୍କୁ ଆଉ ଖାଇ ହେବନାହିଁ । ବରଂ ମାଈ ବଲୁଆ କଥା ମାନିଗଲେ, ବଲୁଆମାନେ

ତାଙ୍କ ପିଲାମାନଙ୍କୁ ଆଣି ତା ପାଖରେ ପହଞ୍ଚାଇବେ । ସେତେବେଳକୁ ତାକୁ ଅସୁବିଧା ହେବନାହିଁ । ଗୁଡ଼ାକୁ ଏକାବେଳକେ ମାରି ଖାଇଦେବ ।

ଏକଥା ଭାବି ଚତାଟି ମନରେ ଅତ୍ୟନ୍ତ ଆନନ୍ଦ । ସେ ଗମ୍ଭୀର ହୋଇ କହିଲା "ମୋର ବହୁତ କାମ । କିନ୍ତୁ ତମମାନଙ୍କ ଭିତରେ ଯେତେବେଳେ କଳି ଲାଗୁଛି, ଆଉ ଏ କଥାଟା ମୋ କାନକୁ ଆସିଲାଣି; ଆଗ ତମ କଥାଟା ତୁଟାଇ ଦେଇ ଆସିବା ମୋର ଉଚିତ । ଚାଲ, ତମ ଗାତ ପାଖକୁ ଯିବା ।"

ତା'ପରେ ଚତାଟି ଦୁଇ ବିଲୁଆଙ୍କ ସାଥିରେ ସେମାନଙ୍କ ଗାତ ଆଡ଼କୁ ଚାଲିଲା । ବିଲୁଆ ଦୁଇଟି ଯେମିତି ତାଙ୍କ ଗାତ ପାଖରେ ପହଞ୍ଚି ଯାଇଛନ୍ତି, ଅଣ୍ଡିରା ବିଲୁଆକୁ ମାଈବିଲୁଆ କହିଲା "ଶୀଘ୍ର ଯାଇ ପିଲା ଦି'ଟାଙ୍କୁ ଧରିଆଣ । ମାମୁଁଙ୍କର କେତେ କାମ । ଆମ ଅଡୁଆ ଛୁଣ୍ଡାଇ ସେ ପୁଣି ଯିବେ ।"

ଅଣ୍ଡିରା ବିଲୁଆଟି ମାଈ ବିଲୁଆ କଥାର ମର୍ମ ଠିକ୍ ଭାବରେ ଠଉରାଇ ନେଲା । ସ ଥେ ସାଥେ ସେ ଗାତ ଭିତରେ ପଶିଗଲା । ଆଉ ପଦାକୁ ଆସିଲା ନାହିଁ । ବହୁତ ଡ଼େରି ହେବାରୁ ମାଈ ବିଲୁଆ କହିଲା "ମାମୁଁ, ତମ ଭଣଜାଙ୍କ କଥା ଦେଖୁଛ ତ ! ତମକୁ ବି ତାଙ୍କର ଖାତିର ନାହିଁ । ଯାଙ୍କୁ ନେଇ ମୁଁ ଆଉ ସାରାଜୀବନ କଟେଇ ପାରିବିନାହିଁ । ତମେ ଟିକଏ ଆମ କଳି ତୁଟାଇ ଦିଅ । ମୋ ପିଲା ଦି'ଟାଙ୍କୁ ମୋତେ ଦେଇଦିଅ । ମୁଁ ଯାଙ୍କ ପାଖରୁ ଚାଲିଯିବି । ମୁଁ ଯାଉଛି । ସେ ନ ଆସିଲେବି ମୁଁ ପିଲା ଦି'ଟାଙ୍କୁ ଧରିଆସେ ।" ଏତକ କହି ମାଈ ବିଲୁଆଟି ଗାତ ଭିତରେ ପଶିଗଲା ।

ଗାତ ବାହାରେ ଶତାବାଘ ଠିଆ ହୋଇଥାଏ । ସେ ଭାବୁଥାଏ ମାଈ ବଲୁଆ ତାର ସ୍ୱାମୀ ଓ ଦୁଇଟି ଛୁଆଙ୍କୁ ଧରି ଆସିବ । ଏଇନେ ଛବ୍ୟସୁନ୍ଦର ଭୋଜନ ତାର ହେବ । ଏଇ ଭାବନାରେ ସେ ଆନନ୍ଦ ପାଉଥାଏ । ତେଣୁ ଧୀରସ୍ଥିର ହୋଇ ଠିଆ ହୋଇଥାଏ ।

ହଠାତ୍ ମାଈ ବଲୁଆର କଥା ଶୁଣି ତା ଭାବନା ଭାଙ୍ଗିଗଲା । ଗାତ ବାହାରକୁ ମୁହଁ ଦେଖାଇ ମାଈ ବଲୁଆ କହିଲା "ମାମୁଁ ! ଆମ ଦୁହିଁଙ୍କର ଝଗଡ଼ା ତୁଟିଗଲା । ସେ ଗୋଟିଏ ପିଲା ନେବାକୁ ଏଥର ରାଜି । ଯାହାହେଉ, ତମ ଦୟାରୁ ମୁଁ ଗୋଟିଏ ପିଲା ପାଇଲି । ତମଠାରେ ମୁଁ ଋଣୀ । ଏ ଜୀବନରେ ମୁଁ ତମର ଋଣ ଶୁଝି ପାରିବି ନାହିଁ ।"

ମାଈ ବଲୁଆର କଥାଶୁଣି ଶତାଟିର ମନ ମରିଗଲା । ସେ ମୁହଁକୁ ତଳକୁ କରି ଧୀରେ ଧୀରେ ତା ରହିବା ଜାଗାକୁ ଗଲା ।

କଥା କହି ଜାଣିଲେ, ସବୁକଥା ହାସଲ କରିହେବ । ସେଇଥି-ପାଇଁ ବଲୁଆ ଦୁହେଁ ପାଣିପିଇ ନିରାପଦରେ ଘରକୁ ଫେରିଲେ ।



# ଚତୁରୀ ବୋହୂ

ବହୁଦିନ ତଳର କଥା ।

ସେତେବେଳେ ପ୍ରତି ଗାଁରେ କୂଅ ନଥିଲା । ଯଦିବା ଥିଲା, ସେ ପୁଣି ଗାଁମୁଣ୍ଡରେ । ଗାଁଯାକର ଲୋକେ ସେଇ କୂଅ ଉପରେ ନିର୍ଭର କରନ୍ତି ।

ସେତିକିବେଳର କଥା । ଗୋଟିଏ ଗାଁରେ ବଣିକଟିଏ ଥିଲା । ତାର ବୋହୂ ପାଣି ଆଣିବାକୁ ଗାଁମୁଣ୍ଡ କୂଅକୁ ଯାଇଥାଏ । ବୁଢା ବଣିକଟି ଗାଁ ଦାଣ୍ଡ ପିଣ୍ଡାରେ ବସିଥାଏ ।

ବୋହୂ ପାଣି କାଢୁଥିଲା, ଏତିକିବେଳେ ଗୋଟିଏ ବାଟୋଇ କୂଅ ପାଖକୁ ଆସି ପାଣି ପିଇବାକୁ ମାଗିଲା ।

ବୋହୂଟି ତ ଲୁଗାପଟା ଖୋସି ପାଣି ବାହାର କରୁଥିଲା । ଜଣେ ବିଦେଶୀ ପାଖକୁ ଯାଇ ପାଣି ଦେବାକୁ ତାକୁ ସଙ୍କୋଚ ଲାଗିଲା । ତେଣୁ କୌଣସି ଆଳରେ ସେ ସେଠୁ ଖସିଯିବାକୁ ଚାହିଁଲା । ସେଥିପାଇଁ ସେ ବାଟୋଇକୁ ପଚାରିଲା – "ତମର ପରିଚୟ କଣ ?"

ବାଟୋଇଟି କହିଲା "ମୁଁ ଜଣେ ବାଟୋଇ ।"

ବୋହୂଟି କହିଲା "ସଂସାରରେ ଦୁଇଜଣ ବାଟୋଇ ଅଛନ୍ତି । ତନ୍ମଧ୍ୟରୁ ତୁମେ କିଏ ?"

ବାଟୋଇଟି ପ୍ରଶ୍ନର ଉତ୍ତର ଦେଇପାରିଲା ନାହିଁ । ବୋହୂଟି କହିଲା..."ମୋ ପ୍ରଶ୍ନର ସଠିକ ଉତ୍ତର ନଦେଲେ ମୁଁ କୂଅମୂଳରେ ପାଣି ଦେବିନାହିଁ । ଘରେ ପାଣି ପିଇବାକୁ ଦେବି ।"

ଏତକ କହି ବୋଦ୍ଧ୍ୟଟି ବାହାରେ ଥିବା ମାଠିଆରେ ପାଣି ପୂରାଇଲା । ଏତିକବେଳେ ଆଉ ଜଣେ ବାଟୋଇ ଆସି କହିଲା—
"ମୋତେ ଭାରି ଶୋଷ, ପିଇବାକୁ ପାଣି ମୁନ୍ଦେ ଦିଅ ।"

ବୋଦ୍ଧ୍ୟ ମଧ୍ୟ ଏହାଠାରୁ ରକ୍ଷା ପାଇବା ପାଇଁ ପଚାରିଲା—
"ତମର ପରିଚୟ କ'ଣ ?"

ସେ କହିଲା—"ମୁଁ ଜଣେ ଦସ୍ୟୁର ପାନ୍ଥ ।"

ବୋଦ୍ଧ୍ୟଟି କହିଲା—"ସଂସାରରେ ଦୁଇଟି ଜୀବ ଦସ୍ୟୁର ପାନ୍ଥ । ତୁମେ ତା ଭିତରୁ କେଉଁଟି ?"

ବାଟୋଇଟି ଉତ୍ତର ନଦେଇ ଚୁପ୍ ରହିଲା । ବୋଦ୍ଧ୍ୟଟି କହିଲା—"ତୁମେ ସଠିକ ଉତ୍ତର ନଦେଲେ, ତମକୁ କୂଅମୂଳେ ପାଣି ପିଇବାକୁ ଦେବନାହିଁ । ଘରେ ପାଣି ପିଇବାକୁ ଦେବ ।"

ବୋଦ୍ଧ୍ୟଟି ପାଣିପାଇଁ କୂଅରେ ମାଠିଆଟି ପକାଇଲା । ଏତିକବେଳେ ଆଉଜଣେ ବାଟୋଇ ଆସି କହିଲା—"ମୋର ମୁନ୍ଦେ ପାଣି ଦରକାର । ପିଇବାକୁ ଦେବେ କି ?"

ବୋଦ୍ଧ୍ୟ ତାକୁ ପଚାରିଲା—"ତମର ପରିଚୟ ?"

"ମୁଁ ଜଣେ ଅଶିକ୍ଷିତ"—ବାଟୋଇଟି କହିଲା ।

"ସଂସାରରେ ଦୁଇଜଣ ଅଶିକ୍ଷିତ ଅଛନ୍ତି । ତୁମେ କେଉଁ ଜଣକ ?"—ବୋଦ୍ଧ୍ୟଟି କହିଲା ।

ଲୋକଟି ଉତ୍ତର ନ ଦେବାରୁ ବୋଦ୍ଧ୍ୟ କହିଲା "ମୋ ପ୍ରଶ୍ନର ସଠିକ୍ ଉତ୍ତର ନଦେଲେ, ଏଠି ପାଣି ପିଇବାକୁ ମିଳିବ ନାହିଁ । ମୋ ସାଥିରେ ଆସିଲେ ଘରେ ପାଣି ପିଇବାକୁ ଦେବ ।"

ବୋହୂଟି ପାଣି ମାଠିଆଟି ବାହାର କରିବାକୁ ଯାଉଛି, ଏତିକିବେଳେ ଆଉ ଜଣେ ବାଟୋଇ ସେଠି ଆସି ପାଣି ପିଇବାକୁ ମାଗିଲା ।

"ତମର ପରିଚୟ ?" ବୋହୂଟି ପଚାରିଲା ।

"ମୁଁ ଜଣେ ବୋକା"...ସେ ଲୋକଟି କହିଲା ।

ସଂସାରରେ ଦୁଇଜଣ ବୋକା ଅଛନ୍ତି । ତା ଭିତରୁ ତୁମେ କେଉଁଟି ?"—ବୋହୂର ପ୍ରଶ୍ନ ଥିଲା ।

ଲୋକଟି ଉତ୍ତର ନ ଦେବାରୁ ବୋହୂଟି କହିଲା "ଏଠି ପାଣି ପିଇବାକୁ ଦେବିନାହିଁ, ମୋ ସାଥିରେ ଆସ, ଘରେ ପାଣି ପିଇବାକୁ ଦେବି ।"

ବୋହୂଟି କାଖରେ ଗୋଟିଏ ମାଠିଆ ଆଉ ଗୋଟିଏ ମାଠିଆ ମୁଣ୍ଡରେ ଥୋଇ ଘରକୁ ଆସିଲା । ପଛେ ପଛେ ଚାରିଜଣ ବାଟୋଇ । ଘରେ ପଶି ବୋହୂ ଭଲ ଲୁଗା ଟିଏ ପିନ୍ଧିଲା । ଚୋଠାରେ ପାଣି ଆଉ ଗିଲାସ ଧରି ପିଣ୍ଡାକୁ ଆସିଲା । ସବୁ ବାଟୋଇଙ୍କୁ ସନ୍ତୋଷକରି ପାଣି ପିଇବାକୁ ଦେବାରୁ ସେମାନେ ସନ୍ତୋଷ ହୋଇ ତାଙ୍କ ରାସ୍ତାରେ ଚାଲିଗଲେ । ବୋହୂଟି ବି ଘରକୁ ଗଲା ।

ଶ୍ୱଶୁର ଏସବୁ କଥା ଦେଖୁଥିଲା । ତା ମନକୁ ଏସବୁ ପାଇଲା ନାହିଁ । ଭାବିଲା—ମୋ ପୁଅ ଘରେ ନାହିଁ । ମୁଁ ଘରର ମୁରବି, ଏଠି ବସିଛି । ଏ ଘରର ବୋହୂ । ଭୂଆସୁଣି ଲୋକ । ଅପରିଚିତ ଚାରିଜଣ ବାଟୋଇଙ୍କୁ ଆଣି ଘରେ ପାଣିଦେଲା । ଅଥଚ ମୁଁ ଶ୍ୱଶୁର । ମୋର ଅନୁମତି ସେ ନେଲା ନାହିଁ । ବୁଢାଟି କ୍ଷୁବ୍ଧ । ସେ ଭାବିଲା-ଆରମ୍ଭରୁ

ପ୍ରତିକାର ନକଲେ ପରେ ଆଉ ସମ୍ଭାଳ ହେବ ନାହିଁ । ସେଥିପାଇଁ ସେ ରାଜାଙ୍କ ପାଖକୁ ଯାଇ ଗୁହାରି କଲା ।

ରାଜା ବୁଢ଼ୀର କଥାଶୁଣି ବିରକ୍ତ ହେଲେ । ସାଥି ସାଥି ବୋହୂକୁ ଡକାଇ ପଠାଇଲେ । ରାଜାଙ୍କ ଲୋକଙ୍କୁ ଦାଣ୍ଡ ଦୁଆରେ ଦେଖି ଶାଶୁଟି ଡରିଗଲା । ସେ ଯାଇ ବୋହୂକୁ ପଚାରିଲା—'କୂଅ ପାଖରେ କାହା ସାଥିରେ ତୁ କ'ଣ କଳି କରିଛୁ ?''

ବୋହୂଟି କହିଲା—''ନା'' ।

ଶାଶୁ କହିଲା ''ରାଜାଘର ଲୋକ ଆସି ତୋତେ ଡାକୁଛି ।''

ବୋହୂ ଡାଣ୍ଡକୁ ଆସିଲା । ପିଆଦାକୁ ସେ ପ୍ରଶ୍ନ କଲା—''ରାଜା ବୋହୂକୁ ଡକାଇଛନ୍ତି ନା ଝିଅକୁ ଡକାଇଛନ୍ତି ?''

ପିଆଦା ଏ ପ୍ରଶ୍ନର ଉତ୍ତର ଦେଇ ପାରିଲା ନାହିଁ । ସେ ପୁଣି ରାଜଦରବାରକୁ ଫେରିଗଲା । ରାଜାଙ୍କୁ ବୋହୂର ପ୍ରଶ୍ନ ଜଣାଇ ଦେଲା । କିଛି ସମୟ ପରେ ଗୋଟିଏ ପାଲିଙ୍କି ସାଥିରେ ସେ ଆସି କହିଲା—''ସ୍ବାମୀ ବୋହୂକୁ ଡାକଛନ୍ତି । ସେ ପାଲିଙ୍କିରେ ବସି ହୋଇ ଆସିବେ ।''

ବୋହୂଟି ରାଜଦରବାରରେ ଉପସ୍ଥିତ । ରାଜା ତାକୁ ସିଧା ପ୍ରଶ୍ନକଲେ—''ତୁମେ ଯୁବତୀ । ତମର ସ୍ୱାମୀ ଅନୁପସ୍ଥିତ । ଶ୍ୱଶୁର ଘରେ ବର୍ଦ୍ଧମାନ । ତୁମେ ତାଙ୍କଠାରୁ ଅନୁମତି ନନେଇ ଗୋଟିଏ ଜଣ ଅପରିଚିତ ଲୋକଙ୍କୁ ଘରକୁ ଡାକି ଆଣିଲ । ସେମାନଙ୍କୁ ପାଣି ଦେଇ ବିଦାକଲ । ଏହା କ'ଣ ତମର ଦୋଷ ନୁହଁ ?''

ବୋହୂଟି ନ ଶଙ୍କି ନମ୍ର ଭାବରେ କହିଲା– "ତୃଷାର୍ତ୍ତଙ୍କୁ ପାଣି ଦେବା ପ୍ରତି ଗୃହିଣୀର କର୍ତ୍ତବ୍ୟ । ମୁଁ କୂଅକୁ ପାଣିପାଇଁ ଯାଇଥିଲି । ମୋର ପିନ୍ଧା ଲୁଗା ଫାଟିଥିଲା । ତା'ଛଡ଼ା ପାଣି ଆଣିବାକୁ ସୁବିଧା ହେବ ବୋଲି ମୁଁ ତାକୁ ଭିଡ଼ିକରି ପିନ୍ଧିଥିଲି । ସେପରି ଅବସ୍ଥାରେ କୌଣସି ଅପରିଚିତ ଲୋକ ପାଖକୁ ଯିବା ଲଜ୍ଜାକର କଥା । ସେଇ ଅବସ୍ଥାରେ ମୋତେ ବାଟୋଇମାନେ ପାଣି ମାଗିଲେ । ମୋତେ ତାଙ୍କ ପାଖକୁ ଯିବାକୁ ଲଜ୍ଜା ମାଡ଼ିଲା । ଏଣେ ପାଣି ପାଇଁ ମନା କରିଦେବାଟା ଗୃହିଣୀ ପକ୍ଷେ ଏକ ଗର୍ହିତ କଥା । ମୁଁ ତାଙ୍କୁ ଜଟିଳ ପ୍ରଶ୍ନ କଲି । ସର୍ତ୍ତ କଲି, ଯଦି ସେମାନେ ମୋ ପ୍ରଶ୍ନର ଉତ୍ତର ଦେଇ ନପାରିବେ, ମୋ ଘରେ ଯାଇ ପାଣି ପିଇବେ । ସେମାନେ ଉତ୍ତର ଦେଇ ପାରିଲେ ନାହିଁ । ସେଥିପାଇଁ ମୋ ପଛେ ପଛେ ଆସିଲେ । ମୁଁ ଘରୁ ଲୁଗା ବଦଳି କରି ଭଲ ଲୁଗା ପିନ୍ଧି ଆସିଲି । ପାଣି ପିଇବାକୁ ଦେଇ ବିଦା କରିଦେଲି ।"

"ତୁମର ପ୍ରଶ୍ନ କ'ଣ ଥିଲା ?" - ରାଜା ପଚାରିଲେ ।

ବୋହୂଟି ସବୁ ପ୍ରଶ୍ନଗୁଡ଼ିକ ପୁଣି ଥରେ କହିଲା । ରାଜା ଓ ସଭାସଦ୍‌ମାନେ ଏ ପ୍ରଶ୍ନର ଉତ୍ତର ଠିକ୍ କରିପାରିଲେ ନାହିଁ । ତେଣୁ ବୋହୂ ସେ ପ୍ରଶ୍ନ ସବୁର ଉତ୍ତର କହିବାକୁ ରାଜା ଅନୁରୋଧ କଲେ ।

ବୋହୂଟି କହିଲା—"ମୋ ପ୍ରଥମ ପ୍ରଶ୍ନର ଉତ୍ତର ହେଉଛି— ପୃଥିବୀରେ ଦୁଇଟି ବାଟୋଇ ଅଛନ୍ତି । ସେମାନେ ସୂର୍ଯ୍ୟ ଓ ଚନ୍ଦ୍ର । ଦ୍ୱିତୀୟ ପ୍ରଶ୍ନର ଉତ୍ତର ହେଉଛି ଗାଈ ଓ ସ୍ତ୍ରୀଲୋକଙ୍କୁ କେବଳ ଦୟାର ପାତ୍ର ବୋଲି କୁହାଯାଇ ପାରିବ । ତୃତୀୟ ପ୍ରଶ୍ନର ଉତ୍ତର ହେଉଛି ପାଣି ଓ ଖାଦ୍ୟ । ସେମାନେ ଅଶିକ୍ଷିତଙ୍କ ପରି ସମସ୍ତଙ୍କୁ

ଯାଇପାରନ୍ତି । ଚତୁର୍ଥ ପ୍ରଶ୍ନର ଉତ୍ତର···" କହି ବୋହୂଟି ଅଟକିଗଲେ ।

ରାଜା କହିଲେ—"ଦୁଇପ୍ରକାର ବୋକା କିଏ ଏବେ କୁହ !"

"ହଁ, ମହାରାଜ···"– କହି ବୋହୂଟି ଚୁପ୍ ରହିଲା ।

"କିଏ ସେ, ନିର୍ଭୟରେ ତୁମେ କହିପାର ।"—ରାଜା ଅଭୟ ଦେଲେ ।

ସ୍ତ୍ରୀଲୋକଟି କହିଲା—"ମୋତେ ଯଦି କ୍ଷମା କରିବେ, ତାହାହେଲେ ମୁଁ କେବଳ ଉତ୍ତର ଦେଇପାରିବି ।"

"ସଙ୍କୋଚ ନକରି କୁହ" ରାଜା ଦେଶ ଥିଲା ।

"ଏଇ ମୁହୂର୍ତ୍ତରେ ଏ ସ୍ଥାନରେ ଦୁଇଜଣ ବୋକା ଅଛନ୍ତି । ଜଣେ ମୋ ଶ୍ୱଶୁର । ସେ କିଛି ନବୁଝି ନଶୁଝି ହଜୁରଙ୍କ ପାଖରେ ଆପତ୍ତିକଲେ । ଅନ୍ୟଜଣକ ନିଜେ ମହାରାଜା । ବୋହୂର ସମ୍ମାନ କଥା ଭୁଲିଯାଇ ରାଜା ତାକୁ ଜଣେ ସାଧାରଣ ଲୋକପରି ରାଜ ଦରବାରକୁ ଅଣାଇଲେ ।" ବୋହୂଟି ଉତ୍ତର ଦେଲା ।

ଏକଥା ଶୁଣି ରାଜା ବିଚଳିତ ହେବାପରି ଜଣାଗଲା ସତ; କିନ୍ତୁ ରାଜା ମନେ ମନେ ବୋହୂଟିକୁ ପ୍ରଶଂସା କରୁଥିଲେ ।



# ସୁନା ଓ ରୂପା

ବହୁ ଦିନ ତଳେ ଜଣେ ରାଜପୁଅ ଥିଲେ । ତାଙ୍କର ଗୋଟିଏ କାଳିଆ ଘୋଡ଼ା ଥାଏ । ଶିକାର କରିବାକୁ ଯିବା ରାଜ ପୁଅଙ୍କର ଅଭ୍ୟାସ । ସକାଳହେଲେ ସେ କଳାଘୋଡ଼ା ଚଢ଼ି ହାତରେ ଧନୁଶର ଧରି ଶିକାରକୁ ବାହାରିପଡନ୍ତି । ତାଙ୍କର ଘୋଡ଼ା ଭାରି ଲକ୍ଷ୍ମୀବନ୍ତ । ସେ ରାଜାପୁଅଙ୍କୁ ଖାଲି ହାତରେ କେବେହେଲେ ଫେରାଇ ଆଣେନାହିଁ ।

ଦିନକର କଥା । ସୂର୍ଯ୍ୟ ବୁଡ଼ି ନଥାନ୍ତି । ଶିକାର ମିଳିଯିବାରୁ ରାଜପୁଅ ଜଙ୍ଗଲରୁ ଶୀଘ୍ର ଫେରିଆସିଲେ । ରାଜନଅର ପାଖରେ ଝରଣାଟିଏ କୁଳୁକୁଳୁ ହୋଇ ବୋହି ଯାଉଥାଏ । ସେ ଘୋଡ଼ାକୁ ପାଣି ପିଇବାକୁ ସେଠି ଅଟକେଇଲେ । ଡାହାଣିଆ ଖରା ସେତେବେଳେ ଝରଣାରେ ପଡୁଥାଏ । ସେ ଖରାରେ ପାଣି ଚକ୍‌ଚକ୍ ମାରୁଥାଏ । ରାଜପୁଅ ଦେଖିଲେ—ଝରଣାରେ ମେଞ୍ଚାଏ ବାଳ ଭାସିଯାଉଛି । ବାଳଗୁଡ଼ିକ ଅପୂର୍ବ । ତାହା ସୁନା ଓ ରୂପାର । ଖରା ପଡ଼ି ତାହା ଉଜ୍ଜଳିଉଠୁଛି । ସେ ଭାବିଲେ ଯାହାର ବାଳ ଏତେ ସୁନ୍ଦର; ସେ କେତେ ସୁନ୍ଦର ହୋଇନଥିବ ! ସେ ପାଣିରୁ ବାଳତକ ଉଠେଇ ଆଣି ନିଜ ପଗଡ଼ିରେ ରଖିଲେ । ମୁହୂର୍ତ୍ତଟିଏ ଆଉ ସେ ସେଠାରେ ଅପେକ୍ଷା କଲେନାହିଁ । ଘୋଡ଼ାକୁ ଖୁବ୍ ଜୋରରେ ଉଆସକୁ ଛୁଟାଇ ଦେଲେ ।

ରାତି ଅଧ । ଉଆସରେ ସମସ୍ତେ ଖିଆପିଆ ସାରି ଶୋଇବାକୁ ଗଲେଣି । କିନ୍ତୁ ଆଶ୍ଚର୍ଯ୍ୟ, ରାଜପୁଅ ଏପର୍ଯ୍ୟନ୍ତ ମଣୋହିକୁ ବିଜେ

କଲେ ନାହିଁ । ରାଜମାତା ବ୍ୟସ୍ତବ୍ୟସ୍ତ ହୋଇପଡ଼ିଲେ । ଚାରିଆଡ଼େ ଖୋଜା ଚାଲିଲା । ରାଜକୁମାରଙ୍କ ଠେଉର ମିଳିଲା ନାହିଁ ।

ଏଇ ସମୟରେ ହଠାତ୍ କୌଣସି କାମରେ ଦାସୀଟିଏ ଭଣ୍ଡାର ଘରେ ପଶିଗଲା । ସେ ଦେଖିଲା—ରାଜପୁଅ ସେଠି ଗୋଟିଏ ଜାଗାରେ ବସିଛନ୍ତି । ମୁଣ୍ଡ ତାଙ୍କର ଝୁଲିପଡ଼ିଛି । ମୁହଁ ଶୁଖି ଯାଇଥାଏ । ଜଣାପଡ଼ୁଥାଏ—ସେ ବିବ୍ରତ । ଚିନ୍ତିତ ଆଉ ବ୍ୟସ୍ତ । ଦାସୀକୁ ଦେଖି ରାଜପୁଅ ଚମକି ଉଠିଲେ । ପରମୁହୂର୍ତ୍ତରେ କହିଲେ—"ହସିଆର । ମୁଁ ଏଠାରେ ଥିବା କଥା କେହି ଯେମିତି ନ ଜାଣନ୍ତି । ତୁ ମରିଯିବୁ ପଛେ, ଏକଥା କାହାକୁ କହିବୁ ନାହିଁ ।"

ଦାସୀଟି ରାଜପୁଅଙ୍କୁ ଜବାବ ଦେଇ ଫେରି ଆସିଲା । ପବନ ଓ ସ୍ତ୍ରୀଲୋକଙ୍କ ପାଖରେ କିଛି ଗୁପ୍ତ ରହେ ନାହିଁ । ପରିପ୍ରକାଶ କରିବା ତାଙ୍କର ଧର୍ମ । ଦାସୀଟି ସେଠୁ ଆସି ରାଣୀଙ୍କୁ ସବୁକଥା କହିଦେଲା ।

ରାଣୀ ଗୋଟିଏ କୁଲିରେ କିଛି କୁଣ୍ଡାଧରି ଦାସୀ ଉପରେ ପାଟି କରି କରି ଭଣ୍ଡାର ଘରେ ପଶିଲେ । ଘରଟା ଘୋର ଅନ୍ଧାର । ତଥାପି ରାଣୀ ସେ ଅନ୍ଧାରରେ ରାଜକୁମାରଙ୍କୁ ଠଉରାଇ ନେଇ ପଚାରିଲେ – "ବାପା, ତୁ କ'ଣ ଏଠି ? ତୋର କ'ଣ ହୋଇଛି କହ । ଯଦି ତତେ କିଏ ଅପମାନ ଦେଇଥାଏ, ତାର ମୁଁ ମୁଣ୍ଡ କାଟିଆଣିବି । କିଏ ଯଦି ଉପହାସ କରିଥାଏ, ତାର ଆଖି ତାଡ଼ିଦେବି । କେହିଯଦି ଆଙ୍ଗୁଠି ଦେଖାଇଥାଏ ତାର ଆଙ୍ଗୁଠି କାଟିଦେବି । ମତେ କହ, ତୋର କ'ଣ ଅସୁବିଧା ହୋଇଛି ?"

ରାଜପୁତ୍ର ତାଙ୍କ ପଗଡ଼ିରୁ ବାଳ ବାହାର କରି କହିଲେ—"ଏଇ ବାଳଟିକୁ ଦେଖ । ଯେଉଁ ଝିଅର ଏପରି ବାଳ ଥିବ, ତା ସହିତ ମୋର ଯଦି ବାହାଘର ନ କରିବୁ, ମୁଁ ଘରଛାଡ଼ି ପଳାଇବି ।"

ରାଣୀ କହିଲେ—"ଏଇଟା କଣ ଏଡ଼େ ବଡ଼ କଥା ଯେ ତୁ ଘରଛାଡି ପଳାଇବୁ । ତୁ ବ୍ୟସ୍ତ ହୁଅନାହିଁ । ମୁଁ ତାର ବ୍ୟବସ୍ଥା କରି ଦେଉଛି ।"

କୁମାର ପୁଣି କହିଲେ—"ଏଇ ବାଳଥିବା ଝିଅ ମୋର ଦରକାର ।

ରାଣୀ ପୁଅକୁ ଆଶ୍ୱାସନା ଦେଇ କହିଲେ - "ଯେ କୌଣସି ମତରେ ହେଉ, ତୁ ସେ ଝିଅକୁ ନିଶ୍ଚୟ ପାଇବୁ ।" କିନ୍ତୁ ପରମୁହୂର୍ତ୍ତରେ ରାଣୀଙ୍କ ମୁଣ୍ଡ ଘୂରିଗଲା । ସେ ଚୂଳିଲିବେଳକୁ ଟଳଟଳ ହେଉଥିଲେ ।

ପରଦିନ ସକାଳ । ରାଜାଙ୍କ ଆଦେଶରେ ବହୁ ଚର ରାଜଦରବାରରୁ ବାହାରି ପଡିଲେ । ରୂପା ଓ ସୁନା ବାଳଥିବା ଝିଅ ଖୋଜି ବାହାର କରିବା ଥିଲା ସେମାନଙ୍କର ଲକ୍ଷ୍ୟ । ଏଇ ଭିତରେ କିଛି ଦିନ ଚାଲିଗଲାଣି । କିନ୍ତୁ ଏ ବିଷୟରେ କୌଣସି ସନ୍ଧାନ ମିଳିଲା ନାହିଁ । ଏଣେ ରାଜପୁତ୍ର ଉଦ୍‌କ୍ରନ୍ଦ । ପୁଅର ଏପରି ଅବସ୍ଥା ଦେଖି ଦିନେ ରାଣୀମାଙ୍କ ଆଦେଶ ହେଲା—ଦେଶର ସମସ୍ତ ଅବିବାହିତ ଯୁବତୀ ରାଜପ୍ରାସାଦ ସମ୍ମୁଖରେ ଧାଡିବାନ୍ଧି ପଟୁଆର କରି ଯିବେ । ସମସ୍ତଙ୍କ ମୁଣ୍ଡ ଖୋଲା ରହିବ ।

ରାଣୀଙ୍କ ଆଦେଶ ଅନୁସାରେ ଖୁବ୍ ସୁନ୍ଦର ସୁନ୍ଦର ଝିଅମାନେ ଶୋଭାଯାତ୍ରାରେ ଗଲେ । ରାଜପୁତ୍ର ସମସ୍ତଙ୍କୁ ଦେଖିଲେ । କିନ୍ତୁ ସୁନା ଆଉ ରୂପା ବାଳଥିବା ଝିଅ ତାଙ୍କ ନଜରକୁ ଆସିଲା ନାହିଁ । ହଠାତ୍ ଯୁବରାଜଙ୍କ ଆଖି ରାଣୀଙ୍କ ଗହଣରେ ବସିଥିବା ଝିଅମାନଙ୍କ ଉପରେ ପଡିଲା । ସେ ଦେଖିଲେ—ସୁନା ଓ ରୂପା ବାଳଥିବା ଝିଅ ଦୁଇଟି ତାଙ୍କ ମାଙ୍କ ପାଖରେ ବସିଛନ୍ତି । ସେ ରାଣୀଙ୍କୁ ଡାକି ଏକଥା ସୂଚାଇ ଦେଲେ  ରାଣୀ ଏହା ଶୁଣି କଳାକାଠ । ପାଟିରୁ ତାଙ୍କର କଥା ବାହାରିଲା ନାହିଁ । କିଛି ସମୟ ପରେ ସେ କହିଲେ – 'ବାପା, ସେମାନେ ପରା ତୋର ଭଉଣୀ ସୁନା ଆଉ ରୂପା ।"

ଯୁବରାଜଙ୍କ ଆଖି ନଇଁ ଆସିଲା । କିନ୍ତୁ ସେ ଜିଦ୍‌ଖୋର । ତାଙ୍କ କଥାରୁ ସୂତାଏ ବି ଘୁଞ୍ଚିବାକୁ ସେ ଅନିଚ୍ଛୁକ । ସେ କହିଲେ- "ସେମାନଙ୍କୁ ମୋତେ ବିବାହ ଦିଅ । ନଇଲେ ମୁଁ ଘର ଛାଡି ଚାଲିଯିବି ।"

ରାଜା ବି ବହୁତ ବୁଝାଇଲେ । ରାଣୀ ମହଲରେ ଯେ ଯେତେଥିଲେ, ସମସ୍ତେ ବହୁତ ଅନୁରୋଧ ଅନୁନୟ କଲେ । ରାଣୀ ହାତଯୋଡି ନତମସ୍ତକ ହୋଇ ପୁଅପାଖେ ଠିଆହେଲେ । କିନ୍ତୁ ଯୁବରାଜ ପାଗଳ । ତାଙ୍କ କଥାରେ ସେ ସଂପୂର୍ଣ୍ଣ ଭାବରେ ଅଟଳ ।

ଶେଷକୁ ବିବାହବନ୍ଦନ ଧାର୍ଯ୍ୟ କରାଗଲା । କଣ୍ଟା ବାଉଁଶ ଅଣା ହୋଇ ବିରାଟ ଛାମୁଣ୍ଡିଆ ହେଲା । ଏ ବ୍ୟବସ୍ଥା ସବୁ ସୁନା ଓ ରୂପାଙ୍କ ନଜରକୁ ଆସିଲା । କଥାଟା ତାଙ୍କୁ ଅଛପା ରହିଲା ନାହିଁ । ସେମାନେ ଏ ଖବର ଶୁଣି ଭାଙ୍ଗି ପଡ଼ିଲେ । ମ୍ରିୟମାଣ ହୋଇଗଲେ । ମୁଣ୍ଡ ଆଉ ଟେକି ପାରିଲେ ନାହିଁ । ଖାଇବା ପିଇବା ଛାଡିଦେଲେ । ଯେତେ ବୁଝାଇଲେ, ସେସବୁ କିଛି ସେମାନେ ଶୁଣିଲେ ନାହିଁ ।

ସୁନା ରୂପାଙ୍କର ପିଲାବେଳର କଥା । ଦିନେ ସେମାନେ ଗୋଟିଏ ଚନ୍ଦନ ଗଛ କେଉଁଠୁ ପାଇଲେ । ଶ୍ରଦ୍ଧାରେ ତାକୁ ଆଣି ନଈକୂଳରେ ପୋତିଦେଲେ । ସେଇଦିନୁ ସେମାନେ ସେ ଗଛମୂଳରେ ପାଣି ଦିଅନ୍ତି । ତାର ତଦ୍ଵି ନିଅନ୍ତି । ଗଛଟି ଦିନକୁ ଦିନ ବଢ଼ିବାକୁ ଲାଗିଲା । ଏମାନେ ଯୁବତୀ ହେଲାବେଳକୁ ଚନ୍ଦନଗଛଟି ଗୋଟିଏ ବିରାଟ ବୃକ୍ଷ ।

ବିବାହ ଦିନ । ସମସ୍ତ ପ୍ରକାର ଆୟୋଜନ ହୋଇସାରିଲାଣି । ଝିଅ କେବଳ ବେଦୀକୁ ଯିବାକୁ ଯାହା ବାକି । କିନ୍ତୁ ସୁନାରୂପା ବେଦୀକୁ ନଯାଇ ଚନ୍ଦନ ଗଛ ପାଖକୁ ଆସିଲେ । ଚନ୍ଦନ ଗଛର ଡାଳରେ ଆଶ୍ରୟ ନେଲେ ।

ଲଗ୍ନବେଳ ଗଡିଯାଉଛି । ଝିଅଙ୍କର ଦେଖା ନାହିଁ । ଘରିଆଡ଼େ ଚହଳ ପଡ଼ିଗଲା । ଖୋଜା ଚାଲିଲା । ଶେଷକୁ ସେମାନେ ଚନ୍ଦନଗଛ ଉପରେ ବସିଥିବାର ଖବର ପହଞ୍ଚିଲା । ରାଜ ପରିବାରର ସମସ୍ତେ ଚନ୍ଦନଗଛ ପାଖକୁ ଆସି ରାଜଜେମାଙ୍କୁ ବେଦୀକୁ ଯିବାକୁ ଅନୁରୋଧ କଲେ । ଜେମାମାନେ କିଛି ଉତ୍ତର ଦେଲେ ନାହିଁ । ଗଛ ଡାଳରେ ଚୁପ୍‌ହୋଇ ବସି ରହିଲେ । ଶେଷକୁ ରାଜା ଆସି କହିଲେ—

"ଓହ୍ଲାଅ, ଓହ୍ଲାଅ, ସୁନାବାଈ ରୂପାବାଈ
ଲଗ୍ନବେଳ ଗଡିଯାଉଛି, ଡେରି କରନାହିଁ ।"

ସୁନା ଓ ରୂପା ଉତ୍ତର ଦେଲେ—"ତୁମେ ଆମର ବାପା । ତମେ କେମିତି ଶ୍ୱଶୁରହେବ ? ଗଛରେ ଗଛ ତୁ ଶୀଘ୍ର ଉଠିଯା ।"

ଯେତେ ଯେ ଡାକିଲେ, ଝିଅ ଦୁହେଁ ତଳକୁ ଆସିଲେ ନାହିଁ । ଝିଅମାନେ ତଳକୁ ନ ଓହ୍ଲାଇବା କଥା ରାଜକୁମାର

ଶୁଣିଲେ । ଶେଷକୁ ସେ ନିଜେ ଆସି କହିଲେ—"ସୁନାରୂପା ଭଉଣୀ ମୋର, ଶୀଘ୍ର ତଳକୁ ଆସ । ବିବାହ ବେଳ ହୋଇଯାଉଛି । ଆଉ ଡେରି କରନାହିଁ ।"

ଭଉଣୀମାନେ କହିଲେ "ଏପର୍ଯ୍ୟନ୍ତ ଆମେ ତମକୁ ଭାଇ ବୋଲି ଡାକୁଥିଲୁ । ଏବେ ତମକୁ ସ୍ୱାମୀ ବୋଲି କପରି ଡାକିବୁ ? ଗଛରେ ଗଛ ! ଉପରକୁ ଉପରକୁ ଉଠିଯା ।"

ହଠାତ୍ ଘଡ଼ଘଡ଼ ଶବ୍ଦ ହେଲା । ଗଛଟି ମେଲା ହୋଇଗଲା । ପରମୁହୂର୍ତ୍ତରେ ଭଉଣୀ ଦୁହେଁ ଗଛ ଭିତରେ ପଶିଗଲେ ।



# ଛୋଟ ମାଠିଆ

ବୁଢ଼ୀଟିଏ । ତାର ପିଲାଛୁଆ କେହି ନଥାଆନ୍ତି । କଷ୍ଟେ ମଷ୍ଟେ ସେ ଚଳିଯାଏ ।

ଥରେ ସେ ହାଟକୁ ଯାଇଥିଲା । ଜିନିଷପତ୍ର ରଖିବା ପାଇଁ ଛୋଟ ଛୋଟ ମାଠିଆ ଗୁଡ଼ାଏ କିଣିଲା । ତାକୁ ଆଣି ଘର ଥାକରେ ରଖିଲା । ଘରେ ତ ଆଉ କେହି ନାହାନ୍ତି । ନିଜେ ରାନ୍ଧିଲେ ଖାଇବ । ବୁଢ଼ୀ କଣ୍ଟା ଅଟା ଧରି ରାନ୍ଧିବାକୁ ଚୁଲି ପାଖରେ ବସିଲା ।

ବୁଢ଼ୀ ଦୀର୍ଘନିଃଶ୍ୱାସ ପକାଇ କହିଲା—"ଏଇନେ ଗହମ ଅମଳ ବେଳ । ମୋର ଯଦି ପୁଅଟିଏ ଥାଆନ୍ତା, ସେ ଏଇନେ କ୍ଷେତକୁ ଗହମ କାଟିବାକୁ ଯାଇଥାଆନ୍ତା ।"—ତା କଥା ଘରର ଚାରିଆଡ଼େ ଖେଳିଗଲା । ଥାକରେ ଥିବା ମାଠିଆମାନେ ଏକଥା ଶୁଣିଲେ । ତାଙ୍କ ଭିତରେ କଥାବାର୍ତ୍ତା ଚାଲିଲା ।

ବୁଢ଼ୀଟିର ତ ବୟସ ବହୁତ । ଭଲରେ ବି ଚଳିପାରୁ ନାହିଁ । ରାନ୍ଧିଲାବେଳେ କୁନ୍ଥଉଛି । ଏତିକିବେଳେ ବୁଢ଼ୀ ଗୋଟିଏ ଶବ୍ଦ ଶୁଣି ଅଟକିଗଲା । ସତେ କି ଯେମିତି ତାକୁ କିଏ କହୁଛି "ମା, ମା, ମୁଁ ଗହମ କାଟିବାକୁ ଯିବି ?"

ବୁଢ଼ୀଟି ଚାରିଆଡ଼କୁ ଚାହିଁଲା । କେଉଁଠି କେହି ନାହିଁ । ତଥାପି ବୁଢ଼ୀ ଆଖି ମିଟ୍ଟି ମିଟ୍ଟି କରି ପଚାରିଲା "କିଏସେ, କେଉଁଠୁ କହୁଛୁ ?"

ଠିକ୍ ଏଇ ସମୟରେ ଗୋଟିଏ ମାଠିଆ ଥାକରୁ ଗଡ଼ି ଗଡ଼ି ବୁଢ଼ୀ ପାଖକୁ ଆସି କହିଲା—"ମା ! ମୁଁ ତୋର ମାଠିଆ ।"

ବୁଢ଼ୀ ମୁହଁରେ ହସ । ସେ ପଚାରିଲା—"ତୁ ଏକୁଟିଆ କ'ଣ କରିପାରିବୁ ?"

"ତମେ ବ୍ୟସ୍ତ ହୁଅ ନାହିଁ । ମତେ ଆଦେଶ ଦିଅ । ଅପେକ୍ଷା କରି ଦେଖ, ମୁଁ କ'ଣ କରିପାରୁଛି ।" —ଶ୍ରେଷ୍ଠ ପାଟଣି ଦେହରୁ ଶବ୍ଦ ଭାସି ଆସିଲା ।

ବୁଢ଼ୀ କବାଟ ଖୋଲିଦେଲା । ମାଠିଆଟି ଦାଣ୍ଡ ଦୁଆର ବାଟ ଦେଇ ଗଡି ଗଡି ବାହାରକୁ ଚାଲିଗଲା । ବୁଢ଼ୀ ଆବାକାବା ହୋଇ ମାଠିଆକୁ ଅନେଇ ରହିଥାଏ ।

ଗାଁ ମୁଖିଆଙ୍କର ବହୁତ ଜମି । ଲୋକ ଲଗେଇ ବି ସହଜରେ ସେ ଗହମ କାଟି ପାରନ୍ତି ନାହିଁ । ମାଠିଆଟି ଗଡି ଗଡି ମୁଖିଆଙ୍କ ପାଖରେ ହାଜର । ମୁଖିଆଙ୍କୁ କହିଲା—"ମତେ ଅନୁମତି ଦେଲେ, ମୁଁ ତମ ଗହମସବୁ କାଟିଦେବି ।"

ମୁଖିଆ ଆଖି ଶ୍ରେଷ୍ଠ କରିଦେଲେ । ମନେ ମନେ ଭାବିଲେ—ଫମ୍ପା ମାଠିଆର ଶବ୍ଦ ବେଶି । ତାପରେ ଘୂଡ଼ୁ ଘୂଡ଼ୁ ହେଉଥିବା ହୁକାରୁ ଦମେ ଟାଣିନେଲେ । ତାପରେ ପଡ଼ାକୁ ଧୂଆଁ ଛାଡ଼ି କହିଲେ "ତୁ ଗୋଟିଏ ଶ୍ରେଷ୍ଠ ମାଠିଆ । ଗହମ କାଟିବା ତୋର କାମ ନୁହଁ । ତୁ ଏଠୁ ଚାଲିଯା ।"

"ମତେ ତମେ ସୁବିଧା ଦିଅ ନା ! ଦେଖିବ, ମୁଁ କ'ଣ କରିପାରୁଛି । କେତେ ଜମି କାଟିବି ମତେ ସେଇଟା କୁହ ।"

ବୁଢା ପୁଣି ବୋଝେ ଧୂଆଁ ଉପରକୁ ଛାଡ଼ିଲା । କିଛିପ୍ର ଗୃହାଣୀରେ ଆକାଶକୁ ଗୃହିଁ ରହିଲା । ଭାବିଲା ଗହମ କାଟିବ ବୋଲି କହୁଛି କାଠୁ । କ୍ଷତି କ'ଣ । ତାପରେ କହିଲା—"ମୋର ଗୋଟାଏ ଚକରେ ପଚିଶ ଏକର ଜମି । ଯା, ସେସବୁକୁ କାଟିଦେ ।"

ମାଠିଆଟି ଗଡ଼ି ଗଡ଼ି ବିଲକୁ ଚାଲିଗଲା । ସବୁ ଜମିରୁ ଗହମ କାଟି ପକାଇଲା । ତା'ପରଦିନ ସକାଳେ ମୁଖିଆ ବିଲକୁ ଗଲେ । ଦେଖିଲେ ସବୁ ଜମିରୁ ଗହମ କଟା ସରିଯାଇଛି । ଏତେ ଜମି କାଟିବାକୁ ତାଙ୍କୁ ବହୁତ ପଇସା ପଡିଥାଆନ୍ତା । ଏକଥା ଭାବି ମୁଖିଆ ମାଠିଆକୁ ଡାକି କହିଲେ—"ତୋ କାମ ପାଇଁ ମୁଁ ଭାରି ଖୁସି । ତତେ ମୁଁ ପଇସା ଦେବାକୁ ଚାହୁଁଛି । କେତେ ଦେବି ? କହ ।"

"ମୋର ପଇସା ଲୋଡ଼ା ନାହିଁ । ମତେ କିଛି ଗହମ ଦେଇଦେବ । ମୁଁ ଖୁସି ହେବ ।" ମାଠିଆଟି କହିଲା ।

ମୁଖିଆ କହିଲେ—"ଗହମ ଅମଳ ହେଲେ ମୁଁ ତତେ ପୂର୍ଣ୍ଣ କରିଦେବି । ତୁ ରାଜି ତ ?"

"ହଁ"—ମାଠିଆଟି କହିଲା । ମୁଖିଆ ମନେ ମନେ ଭାରି ଖୁସି । ମାଠିଆଏ ଗହମ ଜଣେ ଲୋକର ମଜୁରି । ତାଙ୍କୁ ବହୁତ ରହାତି ମିଳିଲା ।

ମୁଖିଆ କହିଲେ—"ଯେଉଁଦିନ ଗହମ ଅମଳ ହେବ, ସେଦିନ ତୁ ଆସି ଗହମ ନେଇଯିବୁ ।"

କିଛିଦିନ ପରେ ମୁଖିଆ ଗହମ ଅମଳ କଲେ । ସେ ଘରକୁ ଗହମ ନେବାକୁ ପ୍ରସ୍ତୁତ ହେଉଥାଆନ୍ତି । ଏତିକିବେଳେ ମାଠିଆ

ଆସି ପହଞ୍ଚି ତା ମଜୁରି ମାଗିଲା । ମୁଖିଆ ବିନା ପ୍ରତିବାଦରେ ଗହମ ନେଇ ମାଠିଆରେ ପୁରାଇବାକୁ ଆରମ୍ଭ କଲେ । ଯେତେ ଗହମ ଢାଳୁଥାଆନ୍ତି, ମାଠିଆ ପୁରୁନଥାଏ । ଆସ୍ତେ ଆସ୍ତେ ଗହମ ସରି ଆସିଲା । ମୁଖିଆ ଭାବୁଥାନ୍ତି, ତାଙ୍କର ପ୍ରତିଜ୍ଞା ସେ ପୂରଣ କରିପାରିବେ ନାହିଁ । ମନେ ମନେ ସେ ଲଜ୍ଜିତ ହେଉଥାନ୍ତି । ଏତିକବେଳେ ମାଠିଆଟି ପୂରିଗଲା ।

ମାଠିଆଟି ଗୋଟିଏ ଗାଡିବାଲାକୁ ଡାକି କହିଲା—"ମତେ ଠିକେ ମୋ ଘରେ ନେଇ ପହଞ୍ଚେଇଦେ ।" ଗାଡିବାଲା ତାକୁନେଇ ବୁଢ଼ୀ ଘରେ ପହଞ୍ଚେଇ ଦେଲା ।

ମାଠିଆଟି ଦୁଆର ମୁହଁରେ ବୁଢ଼ୀକୁ ଡାକି କହିଲା "ମା ! କବାଟ ଖୋଲ । ମୁଁ ତୋ ପାଇଁ କିଛି ଗହମ ଆଣିଛି ।" ମାଠିଆ ଯେତେବେଳେ ଗହମ ସବୁ ଢାଳିଦେଲା, ବୁଢ଼ୀ ଏତେ ଗହମ ଦେଖି ଆଶ୍ଚର୍ଯ୍ୟ ହୋଇଗଲା ।

ସେଇଦିନୁ ବୁଢ଼ୀର ଆଉ ଅଭାବ ନାହିଁ । ସେ ଖାଇପିଇ ଆନନ୍ଦରେ ରହେ ।

ଏହା ଭିତରେ କିଛିଦିନ ବିତିଗଲା । ଦିନେ ବୁଢ଼ୀ ରୁଟି ସେକୁ ସେକୁ ତା ହାତକୁ ପୋଡ଼ିଦେଲା । ଥାକ ଉପରୁ ମାଠିଆଟି ଏକଥା ଦେଖୁଥିଲା । ସେ ବୁଢ଼ୀ ପାଖକୁ ଆସି କହିଲା "ମା, ମା, ତୁ ବୁଢ଼ୀ ହେଲୁଣି । କାମକୁ ପାରୁନୁ । ମୁଁ ଏଥର ବାହାହେବି । ତୋପାଇଁ ବୋହୂଟିଏ ଆଣିବି । ସେ କାମ କରିବ ।"

ବୁଢ଼ୀ ଏକଥା ଶୁଣି କବାଟ ଖୋଲିଦେଲା । ମାଠିଆଟି ଗଡ଼ି ଗଡି ବାହାରକୁ ଚାଲିଗଲା । ମାଠିଆଟି ଯାଉ ଯାଉ ବାଟରେ ଗୋଟିଏ

ବରଯାତ୍ରୀ ଦଳ ଦେଖିଲେ । ସେମାନେ ଗୋଟିଏ କୂଅରୁ ପାଣି ବାହାର କରୁଥାନ୍ତି ପିଇବାକୁ । ମାଠିଆଟି ଚୁପ୍‌କିନା ଯାଇ କୂଅ ପାଖରେ ଗୋଟିଏ ମାଟିଗଦା ଉପରେ ରହିଗଲା । ଜ୍ୱାଇଁଟି କିଛି ନଭାବ ନଚିନ୍ତ ସେଇ ମାଠିଆରେ ପାଣି ଭର୍ତ୍ତି କଲେ । ପାଣି ପୂର୍ଣ୍ଣ ହେବାରୁ ଜ୍ୱାଇଁଟି ଯେମିତି ତାକୁ ଉଠେଇଛି, ମାଠିଆ ତା ଢଣ୍ଡିକୁ ଧରିଲା । ଜ୍ୱାଇଁଟି ଯେତେ ଚେଷ୍ଟା କଲେବି ମାଠିଆ କବଳରୁ ରକ୍ଷା ପାଇପାରିଲା ନାହିଁ । ଲୋକେ ଏଣେ ଡାକିଲେଣି । ଜ୍ୱାଇଁଟି ସେମିତି ନଇଁକରି ରହିଛି । ତାକୁ ଖୁବ ଲାଜ ଲାଗିଲା । ସେ ମାଠିଆକୁ କହିଲା ଭାଇ, ତୁ "ମତେ ଛାଡ଼ିଦେ । ତୁ ଯାହା କହିବୁ ମୁଁ କରିବାକୁ ରାଜି ।"

ମାଠିଆଟି କହିଲା, ସେ ଯଦି ତା କନ୍ୟାଟିକୁ ତାକୁ ଦେବ, ତା'ହେଲେ ସେ ତାକୁ ଛାଡିଦେବ ।

ଜ୍ୱାଇଁର କିଛି ଉପାୟ ନଥିଲା । ତେଣୁ ସେ ଲୋକଲଜ୍ଜାରୁ ରକ୍ଷା ପାଇବାକୁ ମାଠିଆ କଥାରେ ରାଜି ହୋଇଗଲା ।

ବାହାଘର ସରିଲା । ବରକନ୍ୟା ଘରକୁ ଫେରିବା ବାଟରେ ବରଟି ମାଠିଆକୁ କନ୍ୟାଟିକୁ ଦେଇଦେଲା । ତାକୁ ସାଥିରେ ଧରି ମାଠିଆଟି ବୁଢୀ ଦୁଆରେ ଡାକିଲା "ମା, ମା ! ତୋ ବୋହୂକୁ ତୁ ଏଥର ଦେଖ । ବୁଢୀ ଦୁଆର ଖୋଲି ଦେଖେ ତ, ମାଠିଆ ପାଖରେ ବୋହୂଟିଏ ଠିଆ ହୋଇଛି ।

ସେଇଦିନୁ ବୁଢୀ ଆଉ ପୁଅ ପାଇଁ ଲାଳାୟିତ ନୁହେଁ । ମାଠିଆ ତାର ପୁଅ । ସେ ତା ପାଇଁ ସବୁ କାମ କରିଦିଏ ।



# ନେବସିଆ

ଏକଦା ହାତୀଟିଏ ମରିଗଲା । ତା ଆତ୍ମାକୁ ଯମଦୂତମାନେ ଯମରାଜାଙ୍କ ପାଖରେ ହାଜର କଲେ । ଯମରାଜ ତାକୁ ପଚାରିଲେ — "ହାତୀ ଗୋଟିଏ ବଡ ପଶୁ । ମଣିଷଠାରୁ ଖୁବ୍ ବଡ । ଦେହରେ ତାର ବହୁତ ଜୋର । ସେ କପରି ଶ୍ରେଷ୍ଠ ମଣିଷର ଦାସ ହୋଇ ରହେ ? ସେ ବିଷୟରେ ତମେ କିଛି କହିପାରିବ କି?"

ହାତୀଟି କହିଲା—"ମହାରାଜ ! ଆପଣ ମୃତ ଜୀବଙ୍କର ରାଜା । ସେମାନଙ୍କୁ କେବଳ ନିୟନ୍ତ୍ରିତ କରନ୍ତି । ଜୀବନ୍ତଜୀବ ସବୁ ସାଂଘାତିକ । ତା ଭିତରେ ଏଇ ମଣିଷ ସବୁଠାରୁ ଭୟଙ୍କର । ତାର ବୁଦ୍ଧି ବିଚକ୍ଷଣ । ସେ କ'ଣ ବୋଲି କ'ଣ କରିଦେବ, ଆପଣ କଳ୍ପନା କରି ପାରିବେ ନାହିଁ ।"

ଯମରାଜ ଆଶ୍ଚର୍ଯ୍ୟ ହୋଇ ଚିତ୍ରଗୁପ୍ତଙ୍କୁ ଚାହିଁ ରହିଲେ । ଜୀଅନ୍ତା ମଣିଷର କରାମତି ଜାଣିବା ପାଇଁ ଯମଙ୍କର ଭାରି ଇଚ୍ଛା । ସେଥିପାଇଁ ଜଣେ ଜୀଅନ୍ତା ମଣିଷକୁ ଧରି ଆଣିବାକୁ ସେ ଦୂତମାନଙ୍କୁ ଆଦେଶ ଦେଲେ ।

ଦୂତମାନେ ସଂସାରଯାକ ବୁଲିଲେ । କାହାକୁ ଆଣିବେ, ସେମାନେ ସ୍ଥିର କରିପାରୁନଥାନ୍ତି । ଶେଷରେ ସେମାନେ ଗୋଟିଏ ଲୋକ ଏକାକୀ ଶୋଇଥିବାର ଦେଖିଲେ । ଲୋକଟି ଅଦ୍ଭୁତ । ତା ଚାରିପଟେ କାଗଜପତ୍ର ଖେଳାହୋଇ ପଡିଥାଏ । ତଥାପି ସେଇ ଅବସ୍ଥାରେ ସେ ନିଦଘୋଡ ନିଦରେ ଶୋଇପଡିଥାଏ । ଯମଦୂତମାନେ ସେଇ ଲୋକଟିକୁ ଘେନିଆସିଲେ ।

ଲୋକଟି ଜଣେ ନବସିଦ୍ଧା । ସେ କଛୁ ବାଟ ଆସିଲା ପରେ କଥାରେ ଯମଦୂତମାନଙ୍କୁ କିଣିନେଲା । ତାଙ୍କ ସାଥିରେ ସେ ଏପରି ଜମାଇଦେଲା ଯେ, ଯମଦୂତମାନେ ତାକୁ ଅତି ଆପଣାର ବୋଲି ଭାବିଲେ । ସେ ବାଟେଇକରି ଯମଦୂତମାନଙ୍କଠାରୁ ସମ୍ପୂର୍ଣ୍ଣ କଥା ଆଦାୟ କରିନେଲା । ସେମାନେ ଏହା ଭିତରେ ଯମଦ୍ୱାରରେ ପହଞ୍ଚି-ଗଲେ । ତାକୁ ସେଠାରେ ବସାଇ ଦେଇ ଯମଦୂତମାନେ ଯମରାଜାଙ୍କ ନିକଟରୁ ଭିତରକୁ ତାକୁ ନେବାପାଇଁ ଅନୁମତି ଆଣିବାକୁ ଗଲେ ।

ନବସିଦ୍ଧାଟିର ନାମ 'ସିଓରାଜ' । ଯମଦୂତମାନେ ଯମପୁର ଭିତରକୁ ଚାଲିଯିବା ପରେ ସେ ଠିଆହୋଇ ତା ଲୁଗାପଟା ସଜାଡ଼ି-ନେଲା । କାଗଜ ଖଣ୍ଡେ ପକେଟରୁ ବାହାରକଲା । ସେଥିରେ ସେ ଲେଖିଲା—"ଏତଦ୍ୱାରା ଯମରାଜାଙ୍କୁ ବରଖାସ୍ତ କରାଗଲା . ତାଙ୍କ ସ୍ଥାନରେ ସିଓରାଜଙ୍କୁ ନିଯୁକ୍ତ ଦିଆଗଲା । ଯମରାଜା କାଳବିଳମ୍ବ ନକରି ସାଥି ସାଥି ସିଓରାଜଙ୍କୁ କ୍ଷମତା ହସ୍ତାନ୍ତର କରିବେ ।" ତା ତଳେ ବିଷ୍ଣୁଙ୍କର ଦସ୍ତଖତ୍ ସେ ଜାଲ୍ କଲା ।

କାଗଜ ଖଣ୍ଡିକରେ ଏହିପରି ଲେଖିସାରି ସିଓରାଜ ଚୁପ୍‌ହୋଇ ବସିରହିଲା । ଯେତେବେଳେ ତାକୁ ଭିତରକୁ ନେବାର ଆଦେଶ ଆଣି ଯମଦୂତମାନେ ଆସିଲେ, ସେ ଧୀରସ୍ଥିର ଭାବରେ ଜାଲ୍ କାଗଜଟିକୁ ଯମଦୂତମାନଙ୍କୁ ବଢ଼ାଇଦେଲା । ଯମଦୂତମାନେ ସିଓରାଜଙ୍କୁ ଯମରାଜାଙ୍କ ନିକଟରେ ହାଜର କଲେ । ତା ସଙ୍ଗେ ସଙ୍ଗେ ଏ ଆଦେଶକୁ ଯମରାଜାଙ୍କୁ ଦେଖାଇଲେ । ଆଦେଶ ଦେଖି ଯମରାଜା ଥୁନଆ । ସଙ୍ଗେ ସଙ୍ଗେ ସିଓରାଜଙ୍କୁ ସେ ସମସ୍ତ କ୍ଷମତା ହସ୍ତାନ୍ତର କରି ବିଷ୍ଣୁଙ୍କ ଦରବାରକୁ ଧାଇଁଲେ ।

ଏଇ ଅବସରରେ ସିଓରାଜ ତାର ବନ୍ଧୁବାନ୍ଧବମାନଙ୍କୁ ଯମପୁରକୁ ନେଇ ଭଲ ଭାବରେ ଖୁଆଇ ପିଆଇ ପୁଣି ପୃଥିବୀକୁ ପଠାଇଦେଲା ।

ଦରବାରରେ ଯମରାଜଙ୍କୁ ଦେଖି ବିଷ୍ଣୁ ଆଶ୍ଚର୍ଯ୍ୟ । ସାଙ୍ଗେ ସାଙ୍ଗେ ତାଙ୍କୁ ଡ଼ାକି ତାଙ୍କ ଆଗମନର କାରଣ ପଚାରିଲେ ।

ଯମରାଜ କହିଲେ – "ଜାଣତରେ ବା ଅଜାଣତରେ ମୁଁ ମୋ କାର୍ଯ୍ୟରେ କେବେହେଲେ ତ୍ରୁଟି କରି ନାହିଁ । ବିନା ଦୋଷରେ ମୋତେ କାହିଁକି ବରଖାସ୍ତ କରାଗଲା, ମୁଁ ଜାଣିପାରିଲି ନାହିଁ ।"

ବିଷ୍ଣୁ ଯମରାଜାଙ୍କ ଦୈନତା ଦେଖି ବ୍ୟସ୍ତହେଲେ । ଯମରାଜାଙ୍କୁ ଧରି ସିଧା ସେ ଯମପୁରକୁ ଆସିଲେ । ବିଷ୍ଣୁଙ୍କୁ ଦେଖି ସିଓରାଜ ତଳେ ସାଷ୍ଟାଙ୍ଗ ହୋଇ ପଡିଗଲା । ସମସ୍ତ କଥା ଆମୂଳଚୂଳ ସେ ବର୍ଣ୍ଣନା କଲା ।

ବିଷ୍ଣୁ ତାର ବୁଦ୍ଧିକୁ ତାରିଫ କଲେ । ତାକୁ ପୁଣି ପୃଥିବୀକୁ ପଠେଇଦେଲେ । ଯମରାଜଙ୍କୁ କହିଲେ—"ଜାଣନ୍ତୁ ମଣିଷ କେଡ଼େ ମାରାତ୍ମକ ଏଥର ବୁଝ । ସେମାନଙ୍କୁ ମୁଁ ଚଳାଏ । ମୋ କାମ କେତେ କଷ୍ଟକର ଏଥିରୁ ବୁଝିପାରୁଥିବ ।"

ଯମରାଜାଙ୍କୁ ପୁଣି ଗାଦିରେ ବସାଇ ବିଷ୍ଣୁ ସ୍ୱର୍ଗକୁ ପ୍ରସ୍ଥାନ କଲେ ।



# ପୃଥିବୀର ଲୋକକଥା

(୧) ତିବ୍ବତ ନାମ. (୨) ଲାଦାଖ-୧. (୩) ଲାଦାଖ-୨. (୪) ପଞ୍ଜାବ-୧ (୫) ପଞ୍ଜାବ-୨. (୬) ପଞ୍ଜାବ-୩. (୭) ପଞ୍ଜାବ-୪. (୮) ପଞ୍ଜାବ-୫. (୯) ଉତ୍ତର ପ୍ରଦେଶ-୧. (୧୦) ଉତ୍ତରପ୍ରଦେଶ-୨. (୧୧) ପଞ୍ଜାବ-୬. (୧୨) ଉତ୍ତର ପ୍ରଦେଶ-୩. (୧୩) ପଞ୍ଜାବ-୭. (୧୪) ଉତ୍ତର ପ୍ରଦେଶ-୪. (୧୫) ମଧ୍ୟ ପ୍ରଦେଶ-୧. (୧୬) କାଶ୍ମୀର-୧. (୧୭) ଆସାମ-୧. (୧୮) କାଶ୍ମୀର-୨. (୧୯) କାଶ୍ମୀର-୩. (୨୦) ଇହୁଦୀ-୧ (୨୧) ହିମାଚଳ ପ୍ରଦେଶ-୧. (୨୨) ଆସାମ-୨. (୨୩) ଶ୍ରୀଲଙ୍କା-୧. (୨୪) ରୁଷିଆ-୧. (୨୫) ଇହୁଦୀ-୨. (୨୬) ସାନ୍ତାଳ-୧ (୨୭) ଇଙ୍ଗଲିଶ-୧. (୨୮) ମଧ୍ୟ ପ୍ରଦେଶ-୨. (୨୯) ଶ୍ରୀଲଙ୍କା-୨. (୩୦) ସାନ୍ତାଳ-୨. (୩୧) ସାନ୍ତାଳ-୩. (୩୨) ସାନ୍ତାଳ-୪. (୩୩) ସାନ୍ତାଳ-୫). (୩୪) ସାନ୍ତାଳ-୬. (୩୫) ସାନ୍ତାଳ-୭. (୩୬) ନେପାଳ-୧. (୩୭) ହରିୟାନା-୧. (୩୮) ସାନ୍ତାଳ-୮. (୩୯) ସାନ୍ତାଳ-୯. (୪୦) ସାନ୍ତାଳ-୧୦. (୪୧) ସାନ୍ତାଳ-୧୧. (୪୨) ସାନ୍ତାଳ-୧୨. (୪୩) ସାନ୍ତାଳ-୧୩. (୪୪) ସାନ୍ତାଳ-୧୪. (୪୫) କନ୍ଧ-୧ (୪୬) ନେପାଳ-୨ (୪୭) ତିବ୍ବତ-୧. (୪୮) ଇହୁଦୀ-୩. (୪୯) ଇହୁଦୀ-୪. (୫୦) ଜାପାନ-୧ (୫୧) ତାମିଲ୍‌ନାଡୁ-୧. (୫୨) ତାମିଲ୍‌ନାଡୁ-୨. (୫୩) ତାମିଲ୍‌ନାଡୁ-୩. (୫୪) ତିବ୍ବତ-୨ (୫୫) ଫିଲ୍‌ପାଇନ୍-୧. (୫୬) ଫିଲ୍‌ପାଇନ୍-୨. (୫୭) ଚୀନ୍-୧. (୫୮) ଫ୍ରାନ୍‌ସ-୧, (୫୯) ଫ୍ରାନ୍‌ସ-୨ (୬୦) ସ୍କଟ୍‌ଲ୍ୟାଣ୍ଡ-୧ ।

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ
ପୋ.: ଦିଘାଳ, ଜିଲ୍ଲା : ପୁରୀ
ମହାନ୍ତିପଡ଼ା, କାଫଲା, କଟକ-୨

ପ୍ରାପ୍ତି ସ୍ଥାନ : ଗ୍ରନ୍ଥାଳୟ, ପଥିକ, ଭୁବନେଶ୍ୱର, ପଦ୍ମାଳୟା, ବାଦାମବାଡ଼ି, କଟକ ଟ୍ରେଡ଼ିଂ କମ୍ପାନୀ, ବାଲୁବଜାର, କଟକ ।